# ଉତ୍ସର୍ଗ

ଓଡ଼ିଆ ସାହିତ୍ୟର ରୁଚି ଓ ମୂଲ୍ୟବୋଧର ସାମଗ୍ରିକ ଚିନ୍ତାରେ ନିରବଚ୍ଛିନ୍ନ ଭାବେ ନିଜକୁ ସାମିଲ କରି ଯେଉଁ ସାହିତ୍ୟ-ଶ୍ରମ-ଜନ୍ମା 'ମାଟିର ମଣିଷ' ନିଜ ସାଧନାରେ ଅବିଚଳ ରହି 'ଲୁହାର ମଣିଷ' ଭାବେ ଓଡ଼ିଆ ସାହିତ୍ୟର କୁସ୍ତିକସରତ୍ ଫୁଲ୍କା ଉପରେ ସୁ-ପ୍ରତିଷ୍ଠିତ ସେହି କବି, ଔପନ୍ୟାସିକ, ଯୁଗ-ସନ୍ଧାନୀ ଲେଖକ ଶ୍ରୀଯୁକ୍ତ କାଳନ୍ଦୀ ଚରଣ ପାଣିଗ୍ରାହୀଙ୍କର ଅଗ୍ରସ୍ରଷ୍ଟା ଲେଖନୀ-ପୁଷ୍ଟ ହସ୍ତରେ ଉତ୍ତରସ୍ରଷ୍ଟାର ଉତ୍ସର୍ଗୀକୃତ ଏହି 'ବିସ୍ଫୋରଣ'……ଏକ ସାମାନ୍ୟ ଉପହାର ।

ବିନୀତ

**ଆରଣ୍ୟକ**

# BISPHORANA

( Short Story )

Author
ACHARYA ARANYAKA

Artist
Purna Chandra Swain

Publisher -
Smt. Shailabala Kar
Maitri Prakashani
Raghunathjee Lane
Cuttack-9
Phone-23154

Printed
Rekha Press
Cuttack-9

Cover Printed
Sansar Press
Cuttack-9

Price
Rupees Five only
Board Binding Rs. 1·50 Extra

# ବିଷୟ ସୂଚୀ

**ବିସ୍ଫୋରଣ**

( କ୍ଷୁଦ୍ରଗଳ୍ପ )

ଲେଖା

**ଆଚାର୍ଯ୍ୟ ଆରଣ୍ୟକ**

ପ୍ରଚ୍ଛଦ ଚିତ୍ର
ପୂର୍ଣ୍ଣଚନ୍ଦ୍ର ସ୍ୱାଇଁ

ପ୍ରକାଶ :
**ଶ୍ରୀମତୀ ଶୈଳବାଳା କର**
ମୈତ୍ରୀ ପ୍ରକାଶନୀ
ରଘୁନାଥଜୀଉ ଲେନ୍
କଟକ-୯

ମୁଦ୍ରଣ
ରେଖା ପ୍ରେସ
କଟକ-୯

ପ୍ରଚ୍ଛଦ ମୁଦ୍ରଣ :
ସଂସାର ପ୍ରେସ
କଟକ-୯

ପ୍ରଥମ ସଂସ୍କରଣ
ପ୍ରଥମାଷ୍ଟମୀ—୧୯୭[illegible]

ମୂଲ୍ୟ
ପାଞ୍ଚ ଟଙ୍କା
ବୋର୍ଡ଼ ବନ୍ଧେଇ ଟ ୧-୫୦ ଅଧିକା

# ବକ୍ତବ୍ୟ ଓ କୃତଜ୍ଞତା

ଏ ସମ୍ପର୍କରେ ନିଜସ୍ୱ ବକ୍ତବ୍ୟ ଅବଶ୍ୟ କିଛି ନାହିଁ । ଓଡ଼ିଶାର ବିବାଦାସ୍ପଦ ମାନ ୀ ଲେଖକ, ନିଜର କଲମ ଆଘାତରେ ବହୁ ବ୍ୟକ୍ତି ବିଶେଷଙ୍କୁ ବାରମ୍ବାର ଆହତ କରିଛି ଓ ବର୍ତ୍ତମାନ ବି ସେହିପରି ଅବସ୍ଥାରେ ରହିଥିବାରୁ, ସାଧାରଣଙ୍କ ନିକଟରେ ନିଜର ଅନ୍ୟ ରୂପକୁ ପ୍ରକାଶ କରିବା ନିମନ୍ତେ ଛଦ୍ମ ନାମର ଆଶ୍ରୟ ନେଉଛି । ଏ ଗାଳ୍ପିକର ଜ୍ୱଳନ୍ତ ସଂଗ୍ରାମୀ ଲେଖାଦ୍ୱାରେ ଯେଉଁମାନେ ଆତଙ୍କିତ ଆଜି ସେମାନେ ଏ ନୂତନ ଆତ୍ମପ୍ରକାଶକୁ ଆନନ୍ଦ ସହିତ ଗ୍ରହଣ କରି ନେବାରେ ଆଉ କିଛି ଆପତ୍ତି ରହି ନ ପାରେ ।

ବିସ୍ଫୋରଣର ଗଳ୍ପ ସମୂହ ଯଦି ଆପଣମାନଙ୍କୁ କିଛିଟା ନୂତନ ସ୍ୱାଦ ଦେବାର ଲକ୍ଷ୍ୟ କରିବ ତା' ହେଲେ ଆଗାମୀ ଚିନ୍ତାକୁ ପୁନର୍ବାର ଆପଣମାନଙ୍କ ସହିତ ସାମିଲ୍ କରି କିଛି ଦୂର ଆଗେଇ ଯିବ ।

ଯୁବ ନାଟ୍ୟକାର କବି ବନ୍ଧୁ ଶ୍ରୀଯୁକ୍ତ ପ୍ରଫୁଲ୍ଲଚନ୍ଦ୍ର ପଟ୍ଟନାୟକ ପୁସ୍ତକଟିର ନାମକରଣ କରି ଏ ଲେଖକକୁ ସ୍ନେହ ଋଣୀ କରାଇଛନ୍ତି ।

ଏ ଗଳ୍ପ ପ୍ରକାଶ ପାଇଁ ଯେଉଁମାନେ ଉତ୍ସାହିତ କରିଛନ୍ତି ସେହି ସାହିତ୍ୟିକ ବନ୍ଧୁ—

ଭଗବାନ ନାୟକ ବର୍ମା (ସମ୍ପାଦକ, ଉତ୍କଳ ସାହିତ୍ୟ ସମାଜ), ପ୍ରାବନ୍ଧିକ-ରଚନାଗୃହୀ ମହାପାତ୍ର, କବି-କୈଳାସ ଲେଙ୍କା, ଅଧ୍ୟାପକ ହୃଦାନନ୍ଦ ରାୟ, ଅଧ୍ୟାପିକା ମନୋରମା

ମହାପାତ୍ର, ଅଧ୍ୟାପକ ମହାପାତ୍ର ନୀଳମଣି ସାହୁ, ମାତୃଭୂମିର ସମ୍ପାଦକ-ସଚ୍ଚିଦାନନ୍ଦ କର, ଅଧ୍ୟାପକ ବୈଷ୍ଣବଚରଣ ସାମଲ, ହାସ୍ୟରସ-ଗାଳ୍ପିକ ଫକୁରାନନ୍ଦ (ରାମଚନ୍ଦ୍ର ମିଶ୍ର), କବି-ରବି ସିଂ; କବି-ମୁରାରିମୋହନ ଜେନା, ଅଧ୍ୟାପକ ପଠାଣି ପଟ୍ଟନାୟକ; ଶିଶୁ ସାହିତ୍ୟିକ-ନବଆନନ୍ଦ ମହାନ୍ତି, ପ୍ରଦ୍ୟୁମ୍ନ କିଶୋର ବଳ, ଔପନ୍ୟାସିକ-ବ୍ରଜମୋହନ ମହାନ୍ତି (ବେତାର), ସାମ୍ବାଦିକ ଶୁଭେନ୍ଦୁ ବର୍ମା, ଔପନ୍ୟାସିକ-ପରମାନନ୍ଦ ଅଧିକାରୀ, ଗାଳ୍ପିକ ରଘୁନାଥ ମହାପାତ୍ର, ସଂଗଠକ-ଅରୁଣ କୁମାର ପଣ୍ଡା, ସାମ୍ବାଦିକ ନରେନ ବେଉରିଆ, ପ୍ରସନ୍ନ କୁମାର ଦାଶ ଓ ବୃନ୍ଦାବନ ଚନ୍ଦ୍ର ରଥ (ସମ୍ପାଦକ ଉତ୍କଳ ନାଟ୍ୟ ସଂଘ) ପ୍ରମୁଖଙ୍କୁ ଧନ୍ୟବାଦ ନ ଜଣାଇ ରହିପାରୁନି ।

ପରିଶେଷରେ—କବିଚନ୍ଦ୍ର ଡଃ କାଳିଚରଣ ପଟ୍ଟନାୟକ, ଗବେଷକ-ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ, ଗାଳ୍ପିକ-ଅନନ୍ତ ପ୍ରସାଦ ପଣ୍ଡା, ଔପନ୍ୟାସିକ-ରାଜକିଶୋର ପଟ୍ଟନାୟକ, ଉତ୍କଳ ସାହିତ୍ୟ ସମାଜର ସଭାପତି-କବି ଡଃ କୁଞ୍ଜବିହାରୀ ଦାଶ ଓ ଅଡ଼ିଟର ଶ୍ରୀ ହୃଦୟାନନ୍ଦ ନାୟକ ପ୍ରମୁଖ ତୁଙ୍ଗ ଚିନ୍ତାଶୀଳ ରଥୀ, ଏ ଲେଖକକୁ ତାର ଚଲାପଥରେ ବାରମ୍ବାର ଉତ୍ସାହିତ କରି ଅଗ୍ର ପଦପାତ ପାଇଁ ଯେଉଁ ପ୍ରେରଣା ଦେଇ ଆସିଛନ୍ତି ସେଥିପାଇଁ ସେମାନଙ୍କୁ ନମ୍ର କୃତଜ୍ଞତା ଜଣାଉଛି ।

ସହକର୍ମୀ ଶ୍ରୀମାନ୍ ମାଧବଚନ୍ଦ୍ର ସ୍ୱାଇଁ ମୁଦ୍ରଣ ପରିପାଟିର ସମସ୍ତ ଦାୟିତ୍ୱ ନେଇ ଏ ପୁସ୍ତକଟିକୁ ତାର ଆତ୍ମ ପ୍ରକାଶନରେ ସାହାଯ୍ୟ କରିଥିବାରୁ ତା'ର ଦୀର୍ଘ ଜୀବନ ଓ ଆଗାମୀ ସାଫଲ୍ୟ କାମନା କରେ ।

ଲେଖକ

**ଆରଣ୍ୟକ**

# ଉପସ୍ଥାରଣ

ସେ ଏକ ଘଟଣା ନୁହେଁ ବୋଲି ବୁଦ୍ଧିବାଦୀ ପଣ୍ଡିତବର୍ଗ ଜୋରକରି ମତ ଦିଅନ୍ତି । ତେବେ ତାହା ଘଟଣା ନ ହେଲେ ବି, ଦୁର୍ଘଟଣା ମଧ୍ୟ ହୋଇ ପାରେନା । ଲୋକମାନଙ୍କ ମୁଖରେ ସେହି ଘଟଣା ଯେତେବେଳେ ପ୍ରଚରିତ ହେଲା, ତାହା ଏକ ଉଦ୍ଭଟ ଚିନ୍ତାବୋଲି ଯେଉଁମାନେ ମତ ଦେଉଥିଲେ, ସେମାନେ ମଧ୍ୟ ସେ ପ୍ରଚରିତ ଉଦ୍ଭଟ କିମ୍ବଦନ୍ତୀକୁ ଶୁଣିବାକୁ ଚାହୁଁଥିଲେ । ତେଣୁ ସେପରି ଉଦ୍ଭଟ ଚିନ୍ତାକୁ ମୁଁ ଅନ୍ତତଃ ମୋ ପାଇଁ ଲେଖି ରଖିବାକୁ ଚାହିଁଲି, ସେ ଲେଖାଟି ହେଲା ସେହି କିମ୍ବଦନ୍ତୀର ଘଟଣା କିମ୍ବା ମୋ ମାନସିକ ଦ୍ୱନ୍ଦ୍ୱର ଆଉ ଏକ ଦିଗ—ଯାହାକୁ ପଣ୍ଡିତବର୍ଗ ଘଟଣା ନୁହେଁ ବୋଲି ଏବେ ବି କହିବେ ।

କିମ୍ବଦନ୍ତୀଟି ଘଟିଥିଲା କିବା ନ ଘଟିଥିଲା, ସେ କଥା ଅତୀତର ସେହି ଅବଲୁପ୍ତ ରାଜଧାନୀ ଯଦି ଥା'ନ୍ତା ଅବଶ୍ୟ କହିଥାଆନ୍ତା । ସବୁ ବିଲୁପ୍ତିର ଗର୍ଭରୁ ମୁଁ ଯାହାକୁ ଉଦ୍ଧାର କରୁଛି, ତାହାହିଁ ବିଲୁପ୍ତିର ଏକ କାଳ୍ପନିକ ସ୍ମାରକୀ—ଏଣୁ କିମ୍ବଦନ୍ତୀଟି ଏକ କଳ୍ପନା; ଯେଉଁ କଳ୍ପନା କି ଆଉ ଅସ୍ୱୀକୃତ ହୋଇ ପାରେନା । ତେଣୁ ପଣ୍ଡିତ ବର୍ଗ ଓ ମୁଁ, ବର୍ତ୍ତମାନ ଆମେ ସମସ୍ତେ ସେହି ଅବଲୁପ୍ତ ସହରରେ ପହଞ୍ଚି ଯାଇଛୁ । ସେ ସହରର କିମ୍ବଦନ୍ତୀ ଏକ ଘଟଣା ହୋଇ, ସମସ୍ତଙ୍କ ଆଗରେ ଦେଖା ଦେଉଛି । ତେଣୁ ପଣ୍ଡିତ ବର୍ଗ ତାକୁ ଖୁବ ନିରୀକ୍ଷଣ କରି ଦେଖିବାକୁ ଆରମ୍ଭକଲେ ।

ଘଟଣାଟି ଘଟିଥିଲା ସେ ରାଜଧାନୀରେ—କେତେକ ଆଧୁନିକ ଧରଣର କୋଠାଘର ତୋଳା ବ୍ୟାପାରକୁ କେନ୍ଦ୍ର କରି ।

ରାଜଧାନୀର ଶାସକ ଚମ୍ପକ ରାୟ କେତେକ ଉନ୍ନତ ଧରଣର କୋଠାଘର ତୋଳିବାକୁ ଚିନ୍ତା କରିଥିଲେ । ଅବଶ୍ୟ ଚମ୍ପକ ରାୟ ରାଜା କି ଜମିଦାର ଥିଲେ ସେ କଥା ସେସବୁ ଅବଲୁପ୍ତିର ଇତିହାସରେ ଅସ୍ପଷ୍ଟ ହୋଇ ରହି ଯାଇଥିଲା । ତେଣୁ ମୁଁ, କିମ୍ବା ପଣ୍ଡିତବର୍ଗ ସେ ଛିନ୍ନ ପୃଷ୍ଠାରୁ ସେ କଥା ଆବିଷ୍କାର କରି ପାରିନଥିଲୁ । ତେବେ ମୋଟା ମୋଟି ଭାଷାରେ, ଚମ୍ପକ ରାୟ ସେ ରାଜଧାନୀର ଶାସକ ଥିଲେ ଏବଂ ଆଧୁନିକ ଉନ୍ନତ ଧରଣର କୋଠାଘର ତୋଳିବାର କଳ୍ପନା ବି କରିଥିଲେ ।

ଏଇ ଥିଲା ଚମ୍ପକ ରାୟଙ୍କର ଘୋଷଣା—"ମୋ ରାଜଧାନୀରେ ମୁଁ କେତେକ ଆଧୁନିକ ରୁଚି ସମ୍ପନ୍ନ ଉନ୍ନତ ଧରଣର କୋଠାଘର ତୋଳିବାକୁ ଚାହେଁ । ସେଥିପାଇଁ ଆବଶ୍ୟକୀୟ ଜିନିଷପତ୍ର ମୁଁ ଯୋଗାଇ ଦେବି । ଯେଉଁ ଠିକାଦାରମାନେ ଖୁବ୍ କମ୍ ଅର୍ଥ ବ୍ୟୟରେ ଏପରି କୋଠାଘରସବୁ ତୋଳିବାରେ ସମର୍ଥ ହେବେ, ସେମାନେ ଶୀଘ୍ର ଆବେଦନ କରନ୍ତୁ । ସାକ୍ଷାତ କରନ୍ତୁ ।"

ଘୋଷଣାଟି ସମ୍ବାଦ ପତ୍ର ପୃଷ୍ଠାରେ ପ୍ରକାଶ ପାଇଥିଲା । ଟେବୁଲ ଉପରେ ସମ୍ବାଦ ପତ୍ରଟି ପକାଇ ଠିକାଦାର ନିଶିରଞ୍ଜନ ଘୋଷଣାରେ ଥିବା ଅକ୍ଷର କେଇଟିକୁ ନିଜ ଦୁଇ ଆଖିରେ ବାରମ୍ବାର ଲହରେଇ ଦେଉଥିଲେ । ପଢ଼ା ଶେଷରେ ତାଙ୍କର ଆଶ୍ୱସ୍ତିର ନିଶ୍ୱାସ ମୁଣ୍ଡ ଆଗକୁ ଚାହିଁଲେ ସେ । ବୈଠକ ଖାନାରେ ଟଙ୍ଗା ହୋଇଥିବା, ଅହିଂସାର ଦେବତା ବୁଦ୍ଧଙ୍କର ଫଟୋ ଯେପରିକି ହଠାତ୍ ଜୀବନ୍ତ ହୋଇ ଉଠୁଛି । କାନ୍ଥରେ ଧାଡ଼ି ଧାଡ଼ି ହୋଇ ଟଙ୍ଗା ଯାଇଥିବା ରାମ, କୃଷ୍ଣ, ବୁଦ୍ଧ, ବିବେକାନନ୍ଦ, ଦୟାନନ୍ଦ, ଇତ୍ୟାଦିଙ୍କ ଫଟୋ ସତେକି ଯେପରି ହଠାତ୍ ଗୋଟାଏ ଗୁରୁତର ବିଷୟର ନିଷ୍ପତ୍ତିରେ ଲାଗିପଡ଼ିଛନ୍ତି ବୋଲି, ନିଶିରଞ୍ଜନ ଅନୁଭବ କଲେ । ନିଜର ଚାଲକ ପାଇଁ ଚାଲ୍ର

ଆବଶ୍ୟକତା କଥା ସେ ଜାଣିଛନ୍ତି । ସ୍କୁଲ୍ ପାଇଁ ବୁଦ୍ଧି ଓ ବୃଦ୍ଧି ପାଇଁ ଜ୍ଞାନ ହାସଲର ଆବଶ୍ୟକତା, ସେ ଅନୁଭବ କରି ଜ୍ଞାନୀମାନଙ୍କର ଫଟୋକୁ କାନ୍ଥରେ ଲଟକାଇ ରଖିଛନ୍ତି । ଜ୍ଞାନୀମାନଙ୍କର ମୃତ ଆଦର୍ଶ ଫଟୋ ହୋଇ ଆତ୍ମହତ୍ୟାକାରୀଙ୍କ ପରି ଝୁଲୁଛନ୍ତି, ନିଶିରଞ୍ଜନଙ୍କ ଦୁଇ ଆଖିର ପରିଧି ମଧ୍ୟରେ ।

ନିଶିରଞ୍ଜନ ଏଥି ପୂର୍ବରୁ ବହୁ ଗୁରୁତର ନିଷ୍ପତ୍ତି, ଏହି ଫଟୋମାନଙ୍କର ମୃତ ଆତ୍ମହତ୍ୟା ବିବରଣୀରୁ ସଂଗ୍ରହ କରି ନେଇଛନ୍ତି । ଡାକ୍ତରଖାନାକୁ ମାଂସ ଶସ୍ତାରେ ଯୋଗାଣ ବିଷୟରେ—ମନ୍ଦିରକୁ ଶସ୍ତା ବିଶୁଦ୍ଧ ଘିଅ ଦାନ କରିବା ବିଷୟରେ—ଗରିବ ଛାତ୍ରଙ୍କୁ ବୃତ୍ତି ଦେଇ ବିଦ୍ୟା ଦାନ କରିବା ନିମନ୍ତେ; ପୂର୍ବରୁ ସେ ହଠାତ୍ ଫଇସଲା କରି ସିଦ୍ଧାନ୍ତରେ ଉପନୀତ ହୋଇ ପାରିଥିଲେ ।

ଘୋଷଣାଟିକୁ ସେ ମନୋଯୋଗ ଦେଇ ବିଚାର କରିବାକୁ ଲାଗିଲେ । ସିଦ୍ଧାନ୍ତରେ ସେ, ସହରର ଶାସକ ଚମ୍ପକ ରାୟଙ୍କୁ ଜଣାଇ ଦେଲେ ଯେ—ଆଧୁନିକ ଧରଣର ଉନ୍ନତ ବହୁ କୋଠାଘର ସେ କରି ଦେଇ ପାରିବେ; ଯଦି ଶାସକ ଚମ୍ପକ ରାୟ କୋଠାଘର ସ୍ୱତ୍ୱର ନିର୍ମାଣ ପାଇଁ ନିଜ ଘୋଷଣାକୁ ମର୍ଯ୍ୟାଦା ଦିଅନ୍ତି, ତେବେ ସେ ମାଗଣାରେ ଏ କୋଠା ଘର ସବୁ କରିବାକୁ ପ୍ରତିଶ୍ରୁତି ଦେଉଛନ୍ତି ।

ବହୁ ଠିକାଦାରଙ୍କର ଆବେଦନ ପତ୍ର ଚମ୍ପକ ରାୟଙ୍କ ହସ୍ତଗତ ହୋଇଥିଲା । ଅବଶ୍ୟ କେବଳ ନିଶିରଞ୍ଜନଙ୍କ ଆବେଦନ ପତ୍ରକୁ ଛାଡ଼ି, ଅନ୍ୟ ସମସ୍ତ ଠିକାଦାର କୋଠାଘର ନିର୍ମାଣ ପାଇଁ ଆବଶ୍ୟକୀୟ ଜିନିଷପତ୍ର ବ୍ୟତୀତ କିଛି କିଛି ପାରିଶ୍ରମିକ ଅର୍ଥର ବ୍ୟବସ୍ଥା ନିଜ ନିଜ ଆବେଦନ ପତ୍ରରେ ରଖିଥିଲେ । ପାରିଶ୍ରମିକ ବାବଦରେ କେହି ଅଶି ଲକ୍ଷ, କେହିବା ପଚସ୍ତରି ଲକ୍ଷ, ଅନ୍ୟ କେତେକ ଷାଠିଏ ଲକ୍ଷ ଓ ପଚାଶ ଲକ୍ଷ ଏବଂ ସର୍ବନିମ୍ନ ଆବେଦନ ପତ୍ରରେ ଚାଳିଶ ଲକ୍ଷର ବ୍ୟୟ ବ୍ୟବସ୍ଥା ଥିଲା ; କିନ୍ତୁ ନିଶିରଞ୍ଜନଙ୍କ ଆବେଦନ ପତ୍ର ଏ ସବୁର ଏକ ବ୍ୟତିକ୍ରମ ହୋଇ ଯାଇ ଠିକାଦାରମାନଙ୍କ ମନରେ ବିସ୍ମୟ ସୃଷ୍ଟି କରିଥିଲା ।

ଜଣେ ପୁରୁଣା ଅଭିଜ୍ଞ ଠିକାଦାର ମନେ କରୁଥିଲେ ନିଶିରଞ୍ଜନ ନିଶ୍ଚୟ ଜଣେ ଜାଦୁକର । ସେ ଯଦି କୁହୁକିଆ ନହୋଇ ଥା'ନ୍ତେ ତାହେଲେ ମାଗଣାରେ କୋଠାଘର ତିଆରିବାର ଦୁଃସାହସିକ ଆବେଦନ ପତ୍ର ଦେଇଥା'ନ୍ତେ କିପରି ?

ଅନ୍ୟ କେହି କେହି ଠିକାଦାର ମତଦେଲେ ଯେ, ନିଶିରଞ୍ଜନ ଜଣେ ଚତୁର ଠକ । ଶାସକ:ଚମ୍ପକ ରାୟ ସିନା କୋଠାଘର ନିର୍ମାଣ ପାଇଁ ଆବଶ୍ୟକୀୟ ଜିନିଷ ଯଥା—ସିମେଣ୍ଟ, ଲୁହାଛଡ଼, ଚୂନ, ବାଲି ଇତ୍ୟାଦି ଯୋଗାଇ ଦେବେ; ହେଲେ ଠିକାଦାର ତ ନିଶ୍ଚୟ ନିଜ ହାତରୁ ମଜୁରିଆମାନଙ୍କୁ ଅର୍ଥ ଦେବ । ଏପରି କୋଠାଘର ସବୁ ନିର୍ମାଣରେ ଖୁବ୍ କମ୍‌ରେ ପ୍ରାୟ ପଚିଶ ଲକ୍ଷ ଟଙ୍କାର ମଜୁରି ଲାଗିଯିବ—ଏକଥା କ'ଣ ଠିକାଦାର ନିଶିରଞ୍ଜନ ବିଚାରି କରି ନାହାନ୍ତି ? ତେବେ ସେ ମାଗଣାରେ ଏତେଗୁଡ଼ାଏ କୋଠାଘର ତୋଳି ଦେବାର ନିଷ୍ପତ୍ତି ନେଲେ କିପରି ?

ସମସ୍ତଙ୍କର ସନ୍ଦେହ ନିଶିରଂଜନଙ୍କ ଉପରେ ଠୁଳ ହୋଇ ଉଠିଲା । ଚମ୍ପକ ରାୟ ନିଶିରଞ୍ଜନଙ୍କର ଆବେଦନ ପତ୍ର ଗ୍ରହଣ କରି ପଚାରିଲେ—"ଆପଣ ପୂର୍ବରୁ ଠିକାଦାର ଭାବେ କୌଣସି ଉନ୍ନତ ଆଧୁନିକ ଧରଣର କୋଠାଘର କରିଛନ୍ତି କି ?"

ନିଶିରଞ୍ଜନ ଉତ୍ତର ଦେଲେ—"ଗୋଟାଏ ନୁହେଁ ଆଜ୍ଞା ! ଶହ-ଶହ, ଲକ୍ଷ-ଲକ୍ଷ ମଧ୍ୟ । ମୋ କୋଠାଘର ନିର୍ମାଣର ବିଶେଷତ୍ୱ ଯେଉଁ-ମାନେ ଦେଖିଛନ୍ତି ସେମାନେ ସମସ୍ତେ ଆପଣଙ୍କ ପରି ସମାଜରେ ପ୍ରତିଷ୍ଠିତ ମର୍ଯ୍ୟାଦା ସମ୍ପନ୍ନ ବ୍ୟକ୍ତି । ଆପଣ କେବଳ କୋଠାଘର ସବୁର ନିର୍ମାଣ ଉପକରଣ ଯଥା—ସିମେଣ୍ଟ, ବାଲି, ଲୁହାଛଡ଼, ଚୂନ, ରଙ୍ଗମସଲା, ଇଟା ବା ପଥର ଇତ୍ୟାଦି ଯୋଗାଇ ଦେଲେ ଅନ୍ୟ ସମସ୍ତ ଖର୍ଚ୍ଚ ମୁଁ ମାଗଣାରେ ତୁଲାଇ ନେଇ ପାରିବି । ସେପରି ସାଧନା ମୋର ଥିବା କଥା ବହୁ ପ୍ରତିଷ୍ଠିତ ଲୋକେ ଜାଣନ୍ତି ।"

ନିଶିରଞ୍ଜନଙ୍କ ଦୃଢ଼ ଅଥଚ ଛଳନାହୀନ ପ୍ରତିଶ୍ରୁତିକୁ ଚମ୍ପକ ରାୟ ମାନିନେଲେ ସେ ଦିନ । ନିଜ ନାମାଙ୍କିତ ଆଦେଶନାମା ପତ୍ରରେ

ନଶିରଞ୍ଜନଙ୍କୁ କୋଠାଘର ତୋଳିବାର ଅନୁମତି ଲେଖି ଦେଇ କୋଠା-ଘରର ସବୁ ଦେଖିବାର ସୌଭାଗ୍ୟକୁ ଅପେକ୍ଷା କରିବାକୁ ଲାଗିଲେ ସେ ।

ନଶିରଞ୍ଜନଙ୍କର କୋଠାଘର ନିର୍ମାଣରେ ଆଧୁନିକ କୌଶଳ ଧୀରେ ଧୀରେ ସମସ୍ତଙ୍କୁ ଆକୃଷ୍ଟକଲା । ସ୍ୱୟଂ ଶାସକ ଚମ୍ପକ ରାୟ ନିର୍ମାଣ ପରିପାଟିକୁ ଦେଖି ଆଶ୍ଚର୍ଯ୍ୟ ହେଉଥିଲେ । ଶାସକଙ୍କର କଡ଼ା ନିର୍ଦ୍ଦେଶରେ ଠିକାଦାରଙ୍କ ଚାହିଦା ଅନୁଯାୟୀ ଆବଶ୍ୟକୀୟ ଜିନିଷ ଯୋଗାଣରେ ହେଳା ନଥିଲା । ଅବଶ୍ୟ ଶ୍ରମିକ, ମିସ୍ତ୍ରୀ, କୋଠା ନିର୍ମାଣର ବୈଜ୍ଞାନିକମାନଙ୍କୁ ଶାସନ ଦପ୍ତରରୁ ପୂର୍ବର ଆଦେଶନାମା ଅନୁଯାୟୀ କୌଣସି ପାରିଶ୍ରମିକ ଦିଆଯାଉ ନଥିଲା—ଏବାବଦର ସମସ୍ତ ବ୍ୟୟ ଠିକାଦାର ନଶିରଞ୍ଜନ ନିଜେ ନିଜ ତରଫରୁ ଅକୁଣ୍ଠ ଭାବେ ଦେଇ ଚାଲୁଥିଲେ ।

କୋଠାଘର ସବୁର ନିର୍ମାଣ କାର୍ଯ୍ୟ ସମ୍ପୂର୍ଣ୍ଣ ହେବାକୁ ଦୀର୍ଘ ଆଠ ବର୍ଷ ଲାଗିଥିଲା । ଏହି ଆଠ ବର୍ଷ ମଧ୍ୟରେ କୋଠାଘର ଉପ-କରଣ ଯୋଗାଇବା ପାଇଁ ଶାସନ ବିଭାଗରେ ଅତି କମ୍‌ରେ ପ୍ରାୟ ଦଶ ଥର ଅର୍ଥାଭାବ ଦେଖା ଦେଇଥିଲା । ଅବଶ୍ୟ ବୁଦ୍ଧିମାନ ଶାସକ ଚମ୍ପକ ରାୟ ଏ ଅର୍ଥାଭାବକୁ ଦୂର କରିବା ପାଇଁ ସେ ସହରର ନାଗରିକମାନଙ୍କଠାରୁ ଜବରଦସ୍ତ ପ୍ରଚୁର ଅର୍ଥ ଆଦାୟ କରି ନେଉ-ଥିଲେ । ଏହିଗରେ ଠିକାଦାର ନଶିରଞ୍ଜନଙ୍କର ବଳିଷ୍ଠ ମତାମତ ତାଙ୍କୁ ସାହାଯ୍ୟ କରିଥିଲା ।

ସାଧାରଣ ନାଗରିକଙ୍କ ମଧ୍ୟରେ ତୁମୂଳ ଆନ୍ଦୋଳନ ସୃଷ୍ଟି-ହେଲା । ବାରମ୍ବାର ଶାସନ ବିଭାଗକୁ ଅନିୟମିତ ଅର୍ଥ ଦେଇ ଦେଇ ଲୋକେ ଉତ୍ତ୍ୟକ୍ତ ହୋଇ ଉଠିଲେ । ନିମ୍ନଶ୍ରେଣୀର କମ୍ ଆୟକ୍ଷମ ଲୋକେ ଆହୁରି ଅସୁବିଧା ଭୋଗକଲେ । ଜିନିଷ ପତ୍ରର ଦର୍‌ଦାମ୍ ବଢ଼ିବଢ଼ି ଚାଲିଲା । ବାହାରୁ ଜିନିଷ ପତ୍ର ମଗାଇ ଲୋକଙ୍କ ଚାହିଦା ପୂରଣ କରିବା ପାଇଁ, ନିଜ ଶାସନର ଅର୍ଥ ବିଭାଗ ଅକ୍ଷମ ହୋଇ ଉଠିଲା । କେବଳ କୋଠାଘର ସବୁର ନିର୍ମାଣ ପାଇଁ ସହରର ଅନ୍ୟ ସମସ୍ତ ଜନ-ହିତକର ଉନ୍ନୟନ କାର୍ଯ୍ୟକୁ ବନ୍ଦ କରି ଦିଆଗଲା । କ୍ରମେ କ୍ରମେ

ସାରା ସହରର ଦୁର୍ଭିକ୍ଷ ଆଡକୁ ଆଗେଇଲା । ଦସ୍ୟୁଙ୍କୁ ନଶିରଞ୍ଜନ 'ମାଗଣା କୋଠାଘର ଖୋଲିବା ପରେ, ଗରିବ ଲୋକମାନଙ୍କ ପାଇଁ ମାଗଣାରେ ଦୁଇ ଓଳିଆ ଖାଦ୍ୟଛତ୍ର ଖୋଲି ଦେଇଥିଲେ ।

ପୁରୁଣା ଠିକାଦାରମାନେ ମତଦେଇ କହୁଥିଲେ ଯେ ରାଜ୍ୟରେ ଏ ଯେଉଁ ଅଭାବ ପଡ଼ୁଛି ଏଥିପାଇଁ ଠିକାଦାର ନଶିରଞ୍ଜନ ଦାୟୀ ; କାରଣ ମାଗଣା କୋଠା ଖୋଲିବା ଆଳରେ ସେ ରାଜକୋଷକୁ ଲୁଣ୍ଠନ କରୁଥିଲେ । ଲକ୍ଷ, ଲକ୍ଷ କୋଠାଘର ଖୋଲାରେ ଯେତିକ ଉପକରଣ ଓ ଜିନିଷପତ୍ର ଆବଶ୍ୟକ, ମାତ୍ର ଶହେଟି କୋଠାଘର ପାଇଁ ସେତିକ ନଶିରଂଜନ ବରାଦ କରି ନେଉଥିଲେ ।

ଅବଶ୍ୟ ଅସହାୟୀ ଠିକାଦାରମାନଙ୍କ କଥାକୁ ସେ ସହରର ନାଗରିକମାନେ ବିଶ୍ୱାସ କରିବାକୁ ପ୍ରସ୍ତୁତ ନ ଥିଲେ; କାରଣ ଗରିବମାନଙ୍କ ପାଇଁ ନଶିରଞ୍ଜନଙ୍କର ଅକୁଣ୍ଠ ଦାନ, ଧନିକଶ୍ରେଣୀ ପାଇ କ୍ଲବ, ସୁଇମିଂପୁଲ୍ ଇତ୍ୟାଦି ନିର୍ମାଣ, ସାଧୁମାନଙ୍କ ପାଇଁ ସେବା-ପୂଜାର ବିପୁଳ ଆୟୋଜନ ବଳରେ ସହରରେ ସେ ସର୍ବଜନପ୍ରିୟ ହୋଇ ଉଠିଥିଲେ । ଏ ଦୁର୍ଭିକ୍ଷ ସମୟରେ ନଶିରଞ୍ଜନଙ୍କର ପ୍ରଚୁର ଉଦାରତା ପାଇଁ ସମସ୍ତେ ତାଙ୍କର ଜୟ ଜୟକାର କରୁଥିଲେ ।

ସହରର ଅର୍ଥାଭାବ ଉତ୍କଟରୁ ଉତ୍କଟତର ହେଲା । ଚମ୍ପକ ରାୟ ଏହାର କାରଣ ଅନୁସନ୍ଧାନ କରିବାପାଇଁ ନିଜର ସହକାରୀ ବୃଦ୍ଧ ତତ୍ତ୍ୱଦର୍ଶୀଙ୍କୁ ଅନୁରୋଧ କଲେ । ବୃଦ୍ଧ ତତ୍ତ୍ୱଦର୍ଶୀ ନିଜ ଅନୁସନ୍ଧାନ ବିବରଣୀରେ ଦର୍ଶାଇଲେ ଯେ—'ମାଗଣା କୋଠାଘର ଖୋଲିବା ଆଳରେ କୋଠା ନିର୍ମାଣରେ କେତେକ ନୂତନ ଆକର୍ଷଣଗତ ମନୋ-ମୁଗ୍ଧକର ଶୈଳୀ ପ୍ରୟୋଗ କରି ଶାସକଙ୍କୁ ଅଭିଭୂତ କରାଇ ନଶିରଞ୍ଜନ ରାଜକୋଷର ସମସ୍ତ ଅର୍ଥକୁ କୋଠା ନିର୍ମାଣ ଆଳରେ ଜିନିଷମାନ ଆକାରରେ ଲୁଣ୍ଠନ କରିଛନ୍ତି । ତେଣୁ ଏପରି ଧୂର୍ତ୍ତର ଉପଯୁକ୍ତ ବିଚାର କରାଯାଇ, ଏ ସହରରୁ ପାଞ୍ଚ ବର୍ଷ ମଧ୍ୟରେ ଯେତିକ ଅର୍ଥ ଜନସାଧାରଣଙ୍କଠାରୁ ଆଦାୟ କରାଯାଇଛି, ତାଙ୍କଠାରୁ ସେତିକ ଅର୍ଥ ଜବରଦସ୍ତ ପୁନରାଦାୟ କରାଯାଉ ।

ତତ୍ତ୍ୱଦର୍ଶୀଙ୍କର ଅନୁସନ୍ଧାନ ସଂକ୍ରାନ୍ତୀୟ ବିବରଣୀ ପାଇବା ପରେ ଶାସକ ଚମ୍ପକ ରାୟ ବଡ଼ ଚିନ୍ତିତ ହୋଇପଡ଼ିଲେ । କପରି ଏତେଗୁଡ଼ାଏ ଅର୍ଥ ଜଣେ ଧୂର୍ତ୍ତ ଲୋକଠାରୁ ଆଦାୟ କରାଯାଇ ପାରିବ, ତାଙ୍କ ପକ୍ଷରେ ଏହା ଏକ ସମସ୍ୟା ହୋଇ ପଡ଼ିଲା । ତତ୍ତ୍ୱଦର୍ଶୀଙ୍କର ପରାମର୍ଶ ଅନୁଯାୟୀ ଚମ୍ପକରାୟ ଏକ ସୁଚିନ୍ତିତ ଉପାୟ ସ୍ଥିର କରି, ଜନପ୍ରିୟ ନେତା ନଶିରଞ୍ଜନଙ୍କୁ ଡକାଇଲେ । ଆଦେଶ ମାତ୍ରେ ନଶିରଞ୍ଜନ ହସହସ ମୁଖରେ ପହଞ୍ଚି ଶାସକଙ୍କୁ ଅଭିବାଦନ ଜଣାଇଲେ । ଚମ୍ପକ ରାୟ ସହାସ୍ୟ ବଦନରେ ତାଙ୍କୁ ଗୃହିଁ କହିଲେ—"ଆପଣ ମାଗଣାରେ ମୋ ପାଇଁ ଏକ ବିରାଟ କାର୍ଯ୍ୟ କରି ଦେଇ ଥିବାରୁ ମୁଁ ଆପଣଙ୍କର ଗୁଣ-ମୁଗ୍ଧ ହୋଇ ଉଠିଛି । ବର୍ତ୍ତମାନ ଏ ସହରରେ ଖାଦ୍ୟାଭାବ ଦେଖା-ଦେଇଛି । ତେଣୁ ଖାଦ୍ୟ ଆଣିବା ପାଇଁ ମୁଁ ଆବଶ୍ୟକୀୟ ଜିନଷପତ୍ର ଯଥା—ଅଖା ବସ୍ତା, ଶଗଡ଼, ଟ୍ରକ, ମଜୁରିଆ ଇତ୍ୟାଦି ଯୋଗାଇ ଦେବି; ଆପଣ ପୂର୍ବପରି ନିଜର ଅଲୌକିକ ଶକ୍ତି ବଳରେ ମାଗଣାରେ ଖାଦ୍ୟ-ପଦାର୍ଥ ଯୋଗାଇ ଦେବେ ବୋଲି ମୁଁ ଆଶା କରେ । ଆପଣ ମୋର ଜଣେ ବିଶ୍ୱସ୍ତ ଶୁଭେଚ୍ଛୁ ଭାବେ ଏଥିରେ ନିଶ୍ଚୟ ଏକମତ ହେବେ, ଏହା ମୋର ଦୃଢ଼ ବିଶ୍ୱାସ ।"

ଠିକାଦାର ନଶିରଞ୍ଜନ କାଳ ବିଳମ୍ବ ନ କରି, କିମ୍ବା ଗୋଟିଏ ମୁହୂର୍ତ୍ତ ଭାବିବା ପାଇଁ ସମୟ ନଷ୍ଟ ନ କରି ସଙ୍ଗେ ସଙ୍ଗେ ଏପରି ପ୍ରସ୍ତାବରେ ଏକମତ ହୋଇ, ଶାସକଙ୍କୁ ଜଣାଇ ଦେଲେ ଯେ—ବିପଦରେ ବନ୍ଧୁର ଆବଶ୍ୟକତା ଅତି ମଧୁର । ଏ ସମୟରେ ପ୍ରଜାଙ୍କର ମଙ୍ଗଳପାଇଁ ଏପରି ପ୍ରସ୍ତାବକୁ ସ୍ୱାଗତ ଜଣାଇ, ନଶିରଞ୍ଜନ ଚମ୍ପକ ରାୟଙ୍କୁ ଅନୁରୋଧ କଲେ ଯେ ଖାଦ୍ୟପଦାର୍ଥ ଯଥା—ଚାଉଳ, ଗହମ ଇତ୍ୟାଦି ମାଗଣାରେ ଯୋଗାଇଦେବା ଲାଗି ତାଙ୍କୁ ତୁରନ୍ତ ଶାସକଙ୍କ ତରଫରୁ ନିଜର ପ୍ରତିଶ୍ରୁତି ଅନୁଯାୟୀ ଅଖା, ଶଗଡ଼, ଟ୍ରକ୍, ମଜୁରିଆ ଇତ୍ୟାଦି ଯୋଗାଇ ଦିଆଯାଉ; ଏବଂ ଏ କାର୍ଯ୍ୟରେ ହେଳା ନ କରିବା ପାଇଁ ମଧ୍ୟ ସେ ନିଜ ତରଫରୁ ଶାସକଙ୍କୁ ନିବେଦନ କରିଗଲେ ।

ଚମ୍ପକ ରାୟଙ୍କ ପ୍ରସ୍ତାବରେ ନଶିରଞ୍ଜନ ରାଜି ହୋଇ ଯିବାପରେ ତତ୍ତ୍ୱଦର୍ଶୀ ଯେତିକ ଆଶ୍ଚର୍ଯ୍ୟ ହେଲେ ତଦପେକ୍ଷା ବେଶି ଆଶ୍ଚର୍ଯ୍ୟ

ହେଲେ ନଶିରଞ୍ଜନଙ୍କର ବିରୋଧୀ ଠିକାଦାର ଗୋଷ୍ଠୀ । ଏତାଦୃଶ ଦୁଃସାହସ ଦେଖି ତାଙ୍କର ବିରୋଧୀ ତରୁଣ ଓ ବୟସ୍କମାନେ ତାଙ୍କୁ ଧନ୍ୟ ଧନ୍ୟ କରିବାକୁ ଲାଗିଲେ ଓ ସମ୍ମାନ ମଧ୍ୟ କଲେ ।

ନିଜର ଅଙ୍ଗୀକାର ଅନୁଯାୟୀ ନଶିରଞ୍ଜନ ମାଗଣାରେ ଖାଦ୍ୟ-ପଦାର୍ଥ ଯୋଗାଇ ଦେବାକୁ ଆରମ୍ଭ କଲେ । ତଥାପି ଶାସନ ସଂସ୍ଥାରେ ଅର୍ଥାଭାବ ଦେଖାଦେଲା । ସହରର ମୁଖ୍ୟ ଅର୍ଥନିୟନ୍ତ୍ରଣକାରୀଙ୍କୁ ଡକାଇ ଚମ୍ପକ ରାୟ ଏହାର କାରଣ ପଚାରନ୍ତେ, ସେ ଉତ୍ତରରେ କହିଲେ ଯେ— "ପ୍ରଚୁର ପରିମାଣରେ ଅଖା ଯୋଗାଣ, ଦୈନିକ ଶହ ଶହ ଟ୍ରକ୍ ପାଇଁ ଜାଳେଣି ତେଲ କଣା ଓ ଟ୍ରକ୍ ଭଡ଼ା, ଖାଦ୍ୟପଦାର୍ଥ ଟ୍ରକ୍‌ରେ ଚଢ଼ାଇବା ଓ ଓହ୍ଲାଇବା ପାଇଁ ହଜାର ହଜାର ଶ୍ରମିକଙ୍କ ମଜୁରି ଏବଂ ବହୁ ଶଗଡ଼ ଗାଡ଼ି ବ୍ୟବସ୍ଥା ଫଳରେ ବଳଦ ଓ ମଇଁଷିମାନଙ୍କୁ ଖାଦ୍ୟ ଯୋଗାଣ ଇତ୍ୟାଦି, ଏ ଅର୍ଥାଭାବର କାରଣ ଅଟେ ।

ମାଗଣାରେ ଖାଦ୍ୟ ଯୋଗାଣ ଫଳରେ ସାରା ସହରରେ ନଶିରଞ୍ଜନଙ୍କର ମର୍ଯ୍ୟାଦା ଶାସକ ଚମ୍ପକ ରାୟଙ୍କ ଅପେକ୍ଷା ଆହୁରି ବଢ଼ି ଯାଇଛି । ପୁନର୍ବାର ଅର୍ଥାଭାବକୁ ଦୂର କରିବା ଲାଗି ଶାସନ ସଂସ୍ଥା ଆହୁରି ନିର୍ମମ ଭାବେ ନଗରବାସୀଙ୍କଠାରୁ ଦୁଇଗୁଣ ଅର୍ଥ ଆଦାୟ କରୁଥିବା ହେତୁ ଜନସାଧାରଣଙ୍କର ଶାସକ ବିରୋଧୀ ମନୋବୃତ୍ତି ଧୀରେ ଧୀରେ ବଳବତ୍ତର ହେବାକୁ ଲାଗିଲା । ଶାସନ ସଂସ୍ଥା ବିରୁଦ୍ଧରେ ବହୁ ସ୍ଥଳରେ ଆନ୍ଦୋଳନ ଗଢ଼ି ଉଠିଲା । ଚାରିଆଡ଼େ ଚମ୍ପକ ରାୟ ବିରୋଧୀ ସ୍ଲୋଗାନ ଦେଖାଗଲା । ଏପରି ଆନ୍ଦୋଳନକୁ ଦମନ କରିବା ପାଇଁ ଚମ୍ପକ ରାୟ ଉକ୍ତ ବୁଦ୍ଧିମାନ୍ ନଶିରଞ୍ଜନଙ୍କର ସାହାଯ୍ୟ ନେଇଲେ । ନଗରବାସୀ ଓ ଶାସକ ଚମ୍ପକ ରାୟଙ୍କ ଭିତରେ ସୁସମ୍ପର୍କ ପ୍ରତିଷ୍ଠା ପାଇଁ ନଶିରଞ୍ଜନ ଆପ୍ରାଣ ଉଦ୍ୟମ ଚଳାଇଛନ୍ତି ବୋଲି, ସେ ନିଜ ତରଫରୁ ଘୋଷଣା କରିଦେଲେ ; କିନ୍ତୁ ଏହି ଉଦ୍ୟମ ବିଫଳ ହେବାର କାରଣ ଜଣାଇ ସେ, ଚମ୍ପକ ରାୟଙ୍କୁ କହିଥିଲେ ଯେ—ବୃଦ୍ଧ ତତ୍ତ୍ୱଦର୍ଶୀ ବହୁ ବିଭ୍ରାନ୍ତିକର ତଥ୍ୟ ଜନସାଧାରଣଙ୍କ ମନରେ ବେଳେ ବେଳେ ଥୋଇ ଦେଉଥିବାରୁ ସହରର ଅବସ୍ଥା ଧୀରେ ଧୀରେ

ସାଂଘାତିକ ରୂପ ଧାରଣ କରୁଛି । ତେଣୁ ତୁରନ୍ତ ଉକ୍ତ ଜ୍ଞାନହୀନ ବୃଦ୍ଧଙ୍କୁ ଏ ସହରରୁ ବହିଷ୍କାର କରାଗଲେ ଜନସାଧାରଣଙ୍କର ଆନ୍ଦୋଳନକୁ ଆୟତ୍ତାଧୀନ କରାଯିବାର ସୂତ୍ର ଆବିଷ୍କାର କରାଯାଇ ପାରେ ।

ଉପାୟହୀନ ଭାବେ ଶାସକ ଚମ୍ପକ ରାୟ ବୃଦ୍ଧ ତତ୍ତ୍ୱଦର୍ଶୀଙ୍କୁ ସେ ଦିନ ଏକ ଅପ୍ରିୟ ନିଷ୍ପତ୍ତି ଜଣାଇ ତୁରନ୍ତ ସହର ତ୍ୟାଗକରି ଚାଲିଯିବାର ଆଦେଶ ଦେଲେ । ତାପରେ ତତ୍ତ୍ୱଦର୍ଶୀଙ୍କର ଜୀବନୀ ସମ୍ପର୍କୀୟ କିମ୍ବଦନ୍ତୀ ଏଇଠାରୁ ନୀରବ ହୋଇଯାଇଛି ।

ପ୍ରଜା ଆନ୍ଦୋଳନ ବେଳୁବେଳ ଆହୁରି ସଙ୍ଗଠିତ ରୂପନେଇ ଶାସନ ସଂସ୍ଥାର ଅଙ୍ଗ, ପ୍ରତ୍ୟଙ୍ଗକୁ କ୍ଷତବିକ୍ଷତ କରିବାକୁ ଲାଗିଲା । ଚମ୍ପକ ରାୟ ନିଜର ସୈନ୍ୟବାହିନୀ ସାହାଯ୍ୟରେ ଏ ଆନ୍ଦୋଳନକୁ ଚପାଇ ଦେବାର ଦୃଢ଼ ନିଷ୍ପତ୍ତି ନେଇ ବୁଦ୍ଧିମାନ ନିଶିରଞ୍ଜନଙ୍କର ସାହାଯ୍ୟ ଲୋଡ଼ିଲେ । ନିଶିରଞ୍ଜନ ଏତେବେଳେ କି ସାହାଯ୍ୟ କରି-ପାରିବେ ବୋଲି ଶାସକଙ୍କର ମତ ପୁଛିଁଲେ । କେବଳ ସୈନ୍ୟ-ବାହିନୀଙ୍କର ଖାଦ୍ୟ ପାଇଁ ଦୈନିକ ପ୍ରଚୁର ମାଂସ, ଅର୍ଥାତ୍ ମାଗଣାରେ ଅନ୍ୟୂନ ସାତ ଶହ ଛେଳି ଯୋଗାଇ ଦେବାପାଇଁ ସେ ତାଙ୍କୁ ଅନୁରୋଧ କଲେ ; ଏବଂ ଏହି ଛେଳି ସବୁକୁ ରାଜଧାନୀ ମାରଣଶାଳାକୁ ନେଇ ଆସିବା ପାଇଁ ନିଶିରଞ୍ଜନଙ୍କ ସହିତ ଶାସକଙ୍କ ଆଦେଶରେ ସୈନ୍ୟ-ବାହିନୀର କେତେକ ତଳିଆ କର୍ମଚାରୀଙ୍କୁ ମଧ୍ୟ ପଠାଇ ଦିଆଗଲା ।

ଏ ଘଟଣା ପରେ ପରେ ସହରର ଚାରିଆଡେ ତୁମୂଳ କାଣ୍ଡ ଘଟିଗଲା । ସୈନ୍ୟବାହିନୀର ତଳିଆ କର୍ମଚାରୀମାନେ ନାଗରିକମାନଙ୍କର ଛେଳି ସବୁକୁ ଜବରଦସ୍ତ ଦୈନିକ ଶହ ଶହ ସଂଖ୍ୟାରେ ରାଜଧାନୀ ଆଡ଼କୁ ଅଡ଼େଇ ନେଇଯିବାକୁ ଆରମ୍ଭ କଲେ—ଅବଶ୍ୟ ଏହା ପଛରେ ନିଶିରଞ୍ଜନଙ୍କର ପ୍ରଚ୍ଛନ୍ନ ଇଙ୍ଗିତ ଥିବା କଥା ପ୍ରଚାରିତ ହୋଇଥିଲେ ମଧ୍ୟ, ନିଜର ପ୍ରିୟ ନେତା ନିଶିରଞ୍ଜନଙ୍କ ବିରୁଦ୍ଧରେ ଚାଲିଥିବା ଏ ଅପପ୍ରଚାରକୁ ଜନସାଧାରଣ ବିଶ୍ୱାସ ନକରି, ବରଂ ଉତ୍ତ୍ୟକ୍ତ ହୋଇ ଉଠୁଥିଲେ ।

ପରିଶେଷରେ ଜନ ଆନ୍ଦୋଳନର ନେତା ଭାବେ ନିଶିରଞ୍ଜନ, ଏକ ସଙ୍ଗଠିତ ବିରାଟ ଗଣବାହିନୀକୁ ନେଇ ଶାସକ ଚମ୍ପକ ରାୟଙ୍କୁ ତାଙ୍କ ରାଜଧାନୀ ମଧ୍ୟରେ ଅବରୁଦ୍ଧ କରି, ଘେରାଉ କରି ରଖିଲେ ଓ, ନିଜେ ଆଧୁନିକ ଧରଣର ଏକ ନୂତନ କୋଠାର ଗମ୍ବୁଜ ଉପରେ ଠିଆହୋଇ ଜନତାଙ୍କୁ ଉଦ୍‌ବୋଧନ ଦେଇ କହିଲେ—"ଭାଇମାନେ ! ବିଳାସୀ ଚମ୍ପକ ରାୟ ଆପଣମାନଙ୍କ ପରି ସର୍ବହରାଙ୍କର ଧନନେଇ ଏଇ ଯେଉଁ ଇନ୍ଦ୍ରଭବନ ଗଢ଼ିଛନ୍ତି, ଏ ଭବନ ଆପଣମାନଙ୍କର ଅଧୀନରେ ରହିବା ଉଚିତ ଓ ପ୍ରକୃତରେ ଆପଣମାନେ ହିଁ ଏ ଦେଶର ନିର୍ମାତା ।"

ଏତିକବେଳେ ଉତ୍ତ୍ୟକ୍ତ ଜନତା ଚମ୍ପକ ରାୟଙ୍କୁ ଅବରୁଦ୍ଧ ଶାସନ କୋଠାରୁ ପଦାକୁ ଘୋଷାରି ଘୋଷାରି ନେଇ ଆସୁଥିଲେ । ତାଙ୍କ ଦେହରୁ ରକ୍ତର କଣିକା ଛୁଟିକି ଆସି ବିଦ୍ରୋହୀମାନଙ୍କର ପାଦରେ ବିନ୍ଦୁ ବିନ୍ଦୁ ହୋଇ ଲାଗିଯାଉଥିଲା । କିମ୍ବଦନ୍ତୀରୁ ଜଣାଯାଏ; ସେତେ-ବେଳେ ତାଙ୍କ ଦେହରେ ଜୀବନ ନଥିଲା ବୋଲି ।

ଶାସକ ଚମ୍ପକ ରାୟଙ୍କର ଯେତେବେଳେ ଶେଷ ମୃତ୍ୟୁ ଚିତ୍କାର ଶୁଣାଯାଉଥିଲା ଠିକ୍ ସେତିକବେଳେ, ନିଶିରଞ୍ଜନ ଠିଆ ହୋଇଥିବା ଏକ ନୂତନ କୋଠାଟିରୁ ଆଉ ଏକ ଅପ୍ରତ୍ୟାଶିତ ଭୟଙ୍କର ଗର୍ଜ୍ଜନ ଶୁଣାଯାଇଥିଲା । ଗର୍ଜ୍ଜନ ପରେ ପରେ, କୋଠାଘର ଧ୍ୱସ୍ତବିଧ୍ୱସ୍ତ ହୋଇ ମାଟିରେ ଅଜାଡ଼ି ହୋଇ ପଡିଲା । ଏହି ସାଙ୍ଘାତିକ ବିସ୍ଫୋରଣ ଫଳରେ ଗମ୍ବୁଜର ଉପରେ ଠିଆ ହୋଇଥିବା ନିଶିରଞ୍ଜନ ବହୁ ଦୂରକୁ ଛିଟିକି ଯାଇ ତଳେ ପଡ଼ି ଗୁଣ୍ଡ ଗୁଣ୍ଡ ହୋଇଯାଇଥିଲେ । ଏ ଅଦ୍ଭୁତ କାଣ୍ଡ ଫଳରେ ଜନତା ଛତ୍ରଭଙ୍ଗ ଦେଇଥିଲେ, ଏବଂ କେହି କେହି ପ୍ରତ୍ୟକ୍ଷ-ଦର୍ଶୀ କହନ୍ତି, ବିସ୍ଫୋରଣ ପରେ ପରେ କୋଠାଘରର କିଛି ଦୂରରେ ଏକ ରୁଗ୍ଣ ବୃଦ୍ଧ ଲୋକର ଛାଇ ଦିଗ୍‌ବଳୟ ଆଡ଼କୁ ଆଗେଇ ଯାଉଥିଲା—ଆଉ କେହି କେହି କହନ୍ତି, ସେ ଛାଇ ଠିକ୍ ସ୍ୱାମୀ ତତ୍ତ୍ୱଦର୍ଶୀଙ୍କ ପରି ଦେଖାଯାଉଥିଲା ।

କିମ୍ବଦନ୍ତୀଟିକୁ ନିରୀକ୍ଷଣ କରିସାରି ବୁଦ୍ଧିବାଦୀ ପଣ୍ଡିତବର୍ଗ ଯେତେବେଳେ ଏ ଘଟଣାକୁ ଅସ୍ୱୀକାର କରୁଥିଲେ, ମୁଁ ସେତେବେଳେ ସେ କୋଠା ଘରର ଅନ୍ତ ତଳକୁ ଯାଇ ବିସ୍ଫୋରଣର କାରଣ କ'ଣ ଜାଣିବାକୁ ଚେଷ୍ଟା ଚଳାଇ ବ୍ୟର୍ଥ ହେଉଥିଲି, ଏବଂ ପରିଶେଷରେ ମୁଁ ଏକ ଦୁଃଖାବହ ଘଟଣା ଜାଣିଥିଲି ଯେ—ବୁଦ୍ଧ, ଯୀଶୁ, ମହମ୍ମଦ ଓ କୃଷ୍ଣଙ୍କ ମଝିରେ ନିରଞ୍ଜନଙ୍କର ଗୋଟିଏ ଫଟୋ ରଖାଯିବା ପାଇଁ ଜନସାଧାରଣ ତାଙ୍କର ଯେଉଁ ବୃହତ୍ ଫଟୋଟି ସଙ୍ଗରେ ଆଣିଥିଲେ ତାହା ମଧ୍ୟ ସେହି ବିସ୍ଫୋରଣରେ ନଷ୍ଟ ହୋଇ ଯାଇଥିଲା ।



# ମୃତ୍ୟୁର ପ୍ରତିଯୋଗିତା

ସ୍ୱାଗତ, ସମ୍ବର୍ଦ୍ଧନା, ଫୁଲହାର—ଏ ସବୁ ଭିତରେ ତୁଷାରର ଖେଳୁଆଳି ଗୁଣ ଫୁଲି ଉଠୁଥିଲା । ଫୁଟ୍‌ବଲ୍ ଖେଳର ଚମ୍ପିୟନ ସେ । ଇତିହାସର ଆଲେକ୍‌ଜାଣ୍ଡର କମ୍ବା ନେପୋଲିୟନ୍ ପରି, ଆଜି ସେ ନିଜକୁ ବିଶ୍ୱବିଜୟୀ ବୋଲି ମଣୁଥିଲା । ପ୍ରକୃତରେ ତା ପକ୍ଷରେ ସେ ଦିନଟି ଗୋଟିଏ ଗୌରବର ଦିନ ଥିଲା । ସମସ୍ତଙ୍କ ସହିତ କରମର୍ଦ୍ଦନ କରି ଖେଳ ପଡ଼ିଆର ବାହାରକୁ ଆସିଲା ସେ । ବିଜୟୀ ବୀର ଭଙ୍ଗୀରେ ତୁଷାର ଆଗଉଥିଲା ନିଜ ଘର ଅଭିମୁଖରେ । ବାମ ହାତର କହୁଣି ଉପରେ ଦୁଇ, ତିନିଟା ମୋଟା ମୋଟା ଗଜରାହାର ପଡ଼ି ରହିଥାଏ । ଗୋଲାପର ସୁବାସ ଆମୋଦିତ କରୁଥାଏ ତା'ର ମନକୁ ।

ଖେଳ—ତାପରେ ବିଜୟ—ସଙ୍ଗେ ସଙ୍ଗେ ସମ୍ବର୍ଦ୍ଧନା—ତାପରେ ଆତ୍ମତୃପ୍ତି—ପରିଶେଷରେ ସମସ୍ତଙ୍କଠାରୁ ବିଦାୟ । ଏହି ବିଦାୟ ଜଣେ ଘର ବାହୁଡ଼ା ଖେଳୁଆଳିର । ସେ ଲମ୍ବା ଲମ୍ବା ପାହୁଲ ପକାଇ ଆଗେଇ ଯାଉଥିଲା । ଗୋଡ଼ର ବଳିଷ୍ଠ ମାଂସ-ପେଶୀ, ଗୃଲିର ତାଳେ ତାଳେ ଥଲ୍ ଥଲ୍ ହୋଇ କମ୍ପିଉଠୁଥାଏ । ମନରେ ହିମାଳୟ ଅହଂକାର । ଆଜି ସେ ଯେପରି ଖେଳିଛି ତାହା ନିଶ୍ଚୟ ଇତିହାସ ସୃଷ୍ଟି କରିବ । ଆସନ୍ତାକାଲିର ସମ୍ବାଦପତ୍ରରେ ସୁନାର ଅକ୍ଷର ପରି କାଗଜ ପୃଷ୍ଠା ଉପରେ ତାର ନାମ ହସି ଉଠିବ ଦାଉ ଦାଉ ହୋଇ । କେବଳ ନାମ ନୁହେଁ—ବିଭିନ୍ନ ଭଙ୍ଗୀର ଫଟୋ । ମଧ୍ୟ ସାରା ସହରର ଆବାଳ-ବୃଦ୍ଧ-ବନିତା ଆସନ୍ତାକାଲି ଦେଖିବାକୁ ପାଇବେ । ବାଃ—ବାଃ—କରି ସମସ୍ତେ ଏ ବିଜୟୀ ଖେଳାଳିକୁ ଧନ୍ୟ ଧନ୍ୟ କହିବେ ।

ତୁଷାର ଚାଲିଛି—ଆଗେଇ ଚାଲିଛି । ପାଦର ଗତି ସହିତ ମନର ଗତି ତାଳ ରଖି ପାରୁନାହିଁ । ପବନ ପରି ମନର ଗତି ଆହୁରି ଦ୍ରୁତତର । ମନରେ ଅପରିମିତ ଆବେଗ ।

ଖେଳପଡ଼ିଆ ପାଖ ଦେଇ ବାଟ ଚାଲି ଆସିଛି ସେ । ଅତିପ୍ରିୟ ଖେଳପଡ଼ିଆକୁ ଆଉଥରେ ଚାହିଁବା ପାଇଁ ଇଚ୍ଛା ହେଉଛି ତା'ର । 'ବାଜପୁ'ର ପୀଠସ୍ଥଳୀ ସିଏ । ପଛକୁ ଫେରି ଚାହିଁଲା ତୁଷାର । ଅନ୍ଧାର ଭିତରେ ଅଶାନ୍ତର ଇତିହାସ ପରି ଖେଳପଡ଼ିଆ ଝାପ୍‌ସା ଦେଖା ଯାଉଛି । ପଛର ବଣଖଣ୍ଡ ପାଖରେ କିଏ ଜଣେ ଠିଆ ହୋଇଛି କଳା କୋଟ୍ ପିନ୍ଧି । କିଏ...ସେ !! ଲୋକଟା ତୁଷାରକୁ ଚାହିଁ ରହିଛି ବୋଧେ । ମୃତ ଇତିହାସର ଆତ୍ମା କ'ଣ ତା'ର ଅହଂକାରକୁ ଲକ୍ଷ୍ୟ କରୁଛି କି ? ମୁହଁ ବୁଲାଇ ଆଗକୁ ଆଗେଇଲା ତୁଷାର ।

ରାସ୍ତା କଡ଼ର ବିଜୁଳିବତି ଟକ୍ ଟକ୍ କରି ଆଲୁଅ ବିଛୁଡ଼ି ଦେଉଛି । ଅନ୍ଧାରର ଅଣୁ ପରମାଣୁ ଉପରେ ଆକ୍ରମଣ ଚଳାଇଛି । ଅନ୍ଧାର ଆଲୁର ସଂଗ୍ରାମ, ସହରର ରଙ୍ଗକୁ ଏକ ଅଦ୍ଭୁତ ପରିବେଶ କରି ତୋଳିଛି । ସମସ୍ତଙ୍କର ମୂକ ସାକ୍ଷୀ ପରି ନୀରବ ଦର୍ଶକ ଭାବେ ଠିଆହୋଇଛି ସାରା ସହରର ବଡ଼ ବଡ଼ କୋଠାଘରସବୁ । ଆଉଥରେ ପଛକୁ ଚାହିଁଲା ତୁଷାର । ଆଶ୍ଚର୍ଯ୍ୟ...!! ସେହି ଲୋକଟା ତ... ତା'ର ପଛେ ପଛେ ଚାଲିବାରେ ଲାଗିଛି ! ଠିଆ ହୋଇଗଲା ତୁଷାର । ପଛର ଲୋକଟାବି ହଠାତ୍ ଅଟକିଗଲା; ଏବଂ ବଣଖଣ୍ଡ ଆଡ଼ୁଆଳକୁ ମୁହଁ ବୁଲାଇ ନେଲା ସେ । ତୁଷାର ତୀକ୍ଷ୍ଣ ଦୃଷ୍ଟିରେ ତା ଆଡ଼କୁ ଚାହିଁ ଦେଖିଲା—ଲୋକଟା ଖୁବ୍‌ଲମ୍ବା ଏବଂ ଶରୀରର ଗଠନ ଖୁବ୍ ବଳିଷ୍ଠ । ତେବେ ସେ କ'ଣ ଜଣେ ଖେଳାଳୀ ? ନାଁ...ନାଁ.. ସେ କ'ଣ ଜଣେ ଖେଳ ଦର୍ଶକ ?...ସେ କଣ ଜଣେ ପକେଟ୍‌ମାର ? ସେ କ'ଣ ଜଣେ ଦାଗୀ ? ସେ କ'ଣ ଜଣେ ଡାକୁ ? ସେ କ'ଣ ଜଣେ...ସେ କ'ଣ ଜଣେ...ସେ କ'ଣ ଜଣେ...ସେ କ'ଣ ଜଣେ...???—ତୁଷାର ମନରେ ଭୟଙ୍କର ପ୍ରଶ୍ନ । ଛାତିଟା ଉଠିପଡ଼ି ହେବାକୁ ଲାଗିଲା ତା'ର । ସେ

ଭର୍ବଲ ଲୋକଟାକୁ ସୁବଧା ନ ଦେଇ ଶୀଘ୍ର ଘରକୁ ଚାଲିଯିବା ଦରକାର । ତେବେ ଘରତ ଆହୁରି ପ୍ରାୟ ଅଧମାଇଲ ।

—" ଏ ରିକ୍ସା !! "

ତୁଷାର ହଠାତ୍ ଡାକଟାଏ ମାରି ନିଜ ଅଜାଣତରେ ନିଜେ ଚମକି ପଡ଼ିଲା ।

ରିକ୍ସାଟାଏ ସବାରନେଇ ତା ଆଗ ଦେଇ ଚାଲିଗଲା । ସହର ତଳି ଅଞ୍ଚଳର ରାସ୍ତାରେ ରିକ୍ସା କିମ୍ବା ଟ୍ୟାକସିକୁ ଅପେକ୍ଷା କରିବା ବୋକାମୀ ଛଡ଼ା ଅନ୍ୟ କିଛି ନୁହେଁ—ବିଚାରକରି ସେ ତା'ର ଚାଲିବା ବେଗକୁ ବଢ଼ାଇ ଦେଲା । ଅବଶ୍ୟ ମଝିରେ ମଝିରେ ପଛକୁ କଣେଇ କଣେଇ ଚାହୁଁଥାଏ ସେ ।

ଜୀବନ ପଛେ ପଛେ ମୃତ୍ୟୁ ସମ ତାଳରେ ଛୁଟିଲାପରି ପଛରି ସେହି ଲୋକଟା ତା ପଛେ ପଛେ ଚାଲିଛି । ଲୋକଟା ତୁଷାରର ବେଶି ଦୂରରେ ନ ଥିଲା । ତା ପାଦର ଭାରି ବୁଟ୍‌ଜୋତା ହାଲକା ମଚ୍ ମଚ୍ କରି ମୃତ୍ୟୁର ଘଣ୍ଟାଧ୍ୱନି ପରି ଶବ୍ଦ କରୁଥାଏ । ଛକ ପାଖ ମୋଡ଼ ବୁଲିଲା ତୁଷାର । ଭାବିଥିଲା—ଏଇ ମୋଡ଼ରୁ ଲୋକଟା ବୋଧେ ଅନ୍ୟ ରାସ୍ତାରେ ଚାଲିଯିବ ।

ମୋଡ଼ ପାଖରେ ଥିବା ମୂତ୍ରାଗାର ଭିତରକୁ ତୁଷାର ଆଟେଇଲା । ପରିସ୍ରାର ବେଗରେ ତା'ର ତଳି ପେଟଟା ବନ୍ଧି ଉଠୁଥାଏ । ଜମାଟ ବନ୍ଧା ଭୟ ହେତୁ ଏତେବେଳ ଯାଏ ସେ କେଉଁଠାରେ ହେଲେ ପରିସ୍ରା କରିବାର ସୁଯୋଗ ନେଇ ନ ଥିଲା । ଲୋକଟା ସେ ଏଇଠାରୁ ନିଶ୍ଚୟ ଫେରିଯିବ ଭାବି, ସେ ପରିସ୍ରା କରିବା ପାଇଁ ମୂତ୍ରାଗାରକୁ ଗଲା; ଓ ପରିସ୍ରାକରି ଫେରି ଆସି ଦେଖିଲା; ଲୋକଟା ରାସ୍ତା କଡ଼ରେ ତାକୁ ଅପେକ୍ଷା କରି ଠିଆ ହୋଇଛି । ପଦାକୁ ଦେଖାଗଲା ପରି ନିଜ ହାତରେ ପିସ୍ତଲଟାକୁ ମୁଠାଇ ଧରିଛି ସେ । ଚମକି ପଡ଼ିଲା ତୁଷାର । ସ୍ୱପ୍ନ ମୃତ୍ୟୁ ଦୂତ ନୁହେଁତ ??

ତୁଷାରର ଭୟମିଶା ଆଖି ଦୁଇଟା ଲୋକଟାର ଦୁଇ ଆଖିରେ ମିଳିଗଲା । ତୁଷାର ଅନୁଭବ କଲା ସତେକି ଲୋକଟାର ଆଖି ଦୁଇଟି

ଯେପରିକ ତାକୁ ବନ୍ଧୁକର ଦପ୍ ଦପ୍ କରି ନିଆଁପରି ଜଳି ଉଠୁଛି । ମୃତ୍ୟୁ ଯେ ତାର ଖୁବ୍ ନିକଟରେ—ଏକଥା ଭାବି, ତା'ର ଶିରାର ରକ୍ତଗୁଡ଼ାକ ଶୀତଳ ହେବାର ଅନୁଭବ କଲା ସେ ।

ଶିକାରୀ କବଳରୁ ଶିକାର ଖସିଯିବା ପାଇଁ ଚଞ୍ଚଳ ହେଲାପରି, ପୁନର୍ବାର ରାଜପଥ ଉପରେ ଆତୁରି ଦ୍ରୁତଗତିରେ ଆଗେଇବାକୁ ଲାଗିଲା ତୁଷାର । ଅବଶ୍ୟ ବେଳେ ବେଳେ ପଛର ସେହି ଅଦ୍ଭୁତ ଲୋକଟାକୁ କଣେଇ କଣେଇ ଚାହିଁ ତା'ର ଗତି ପଥକୁ ଲକ୍ଷ୍ୟ କରୁଥାଏ ସେ ।

ତୁଷାର ଖୁଲିବା ଆରମ୍ଭ କରିବାରୁ ଲୋକଟା ନିଜ ପ୍ୟାଣ୍ଟ ପକେଟ୍‌ରେ ପିସ୍ତଲଟାକୁ ଭର୍ତ୍ତି କରି ଦେଇ ପୁଣି ତା ପଛେ ପଛେ ଛୁଟିଲା । ଆଗରେ···ଆଉ ଗୋଟାଏ ମୋଡ଼ । ଘୂରିଗଲା ତୁଷାର । ଘୂରିଗଲା ବେଳେ ପଛର ଲୋକଟାକୁ ଚାହିଁ ନେଲା ସେ । ଆଶ୍ଚର୍ଯ୍ୟ !! ଟିକ୍ ଟିକ୍ କରୁଥିବା ଏକ ସ୍ପ୍ରିଙ୍ଗ୍‌ଲଗା ଛୁରିଟାକୁ ବନ୍ଦ କରି ସେ ଲୋକଟା ନିଜ କୋଟ୍ ପକେଟ୍ ଭିତରେ ଲୁଚାଇ ଦେଲା । ଏଥର ତୁଷାର ଅନୁଭବ କଲା; ଏଇ ନିଘୁଞ୍ଚିଆ ଜାଗାରେ ସେ ନିଶ୍ଚୟ ତା'କୁ ଆକ୍ରମଣ କରିବ; କିନ୍ତୁ କାହିଁକି···?? କ'ଣ କିଛି ଅର୍ଥ ଲୋଭରେ ? ମାଗିଲେ ତ ତା ପାଖରେ ଯାହା ଅଛି ସବୁ ଦେଇ ଦିଅନ୍ତା ! ତୁଷାର ମନରେ ଭୟମିଶା ପ୍ରଶ୍ନର ପାହାଡ଼ ।

ସେ ଭାବୁଛି ଖେଳରେ ଜିତିବା ହେତୁ ଲୋକଟା କ'ଣ ତା ପ୍ରତି ହିଂସ୍ର ହୋଇ ଉଠିଛି ? ସେ କ'ଣ ତା'ର ଜଣେ ପ୍ରତିଦ୍ୱନ୍ଦ୍ୱୀ ଖେଳାଳୀ ଥିଲା ? ତେବେ କ'ଣ ସେ ହାରିଯିବାରୁ ତହିଁର ପ୍ରତିଶୋଧ ପାଇଁ ସୁବିଧା ଖୋଜି ଖୋଜି ତାକୁ ମାରିଦେବା ଲାଗି ଏତେ ଦୂର ଆସିଛି ? ଲୋକଟା···ଲୋକଟା···ଲୋକଟା ?? ତୁଷାରର ମୁଣ୍ଡ ଭିତରେ ଆଗାମୀ ବିପଦ ତା'ର ହଜାଇ ବାହୁ ବିସ୍ତାର କରି ଯେପରିକ ଏକ ଅଛିଣ୍ଡା ଜାଲ ବୁଣିବାକୁ ଆରମ୍ଭ କରି ଦେଇଛି ।

ଜୀବନ ଓ ମରଣର ଯୁଦ୍ଧ । ବିଜୟ ତେବେ କାହାର ହୋଇଥାଏ ? ମୃତ୍ୟୁ ଜୟଲାଭ କରେ ନା ନାହିଁ ? ଅଜର ବିଜୟୀ

ଜୀବନକୁ ନେଇ ଗର୍ବ କରିବାର କ'ଣ ଅଛି ? ଆନନ୍ଦକୁ ମଧ୍ୟ ନିରାନନ୍ଦ ହଠାତ୍ ଖାଇ, ସହଜରେ ହଜମ କରି ତା'ର ସତ୍ତା ପର୍ଯ୍ୟନ୍ତ ଲୋପ କରି ଦେବା ସମ୍ଭବ ନୁହେଁ କି ? ଆନନ୍ଦର ଅର୍ଥ ତେବେ କ'ଣ…?—ମୁଣ୍ଡ ଭାରାକ୍ରାନ୍ତ ହୋଇ ଆସୁଥିଲା ତୁଷାରର । ସେ ଅନୁଭବ କଲା; ତା ବାମ ହାତ ଉପରେ ଯେଉଁ ଗଜରାମାଳ କେଇଟା ଥିଲା, ତା ଅଜାଣତରେ ସେଗୁଡ଼ାକ କେତେବେଳେ କେଉଁଠି ଖସିପଡ଼ିଛି—ତାର ଲକ୍ଷ୍ୟ ନଥିଲା ସେଥିପ୍ରତି । ପଛକୁ କଣେଇ ଚାହିଁଲା ସେ । ସେହି ଲୋକଟା ବେକରେ, ତା ହାତରେ ଥିବା ସମସ୍ତ ଗଜରା ଏକତ୍ର ହୋଇ ଦୋହଲୁଛି । ତୁଷାର ଭାବିଲା—ରାସ୍ତାରୁ ଖସି ପଡ଼ିବା ବେଳେ, ତାକୁ ସବୁ ଗୋଟାଇ ନେଇ, ନିଜ ବେକରେ ପକାଇ ଦେଇଛି ସେହି ପଛର ଲୋକଟା ନିଶ୍ଚୟ । ଗୋଲାପର ସୁବାସ ତା ପାଖରୁ ବିଦାୟ ନେଇ, ପଛଲୋକ ପାଖକୁ ପଳାଇ ଯାଇଛି ।

ଘର ଆଉ ଅଳ୍ପବାଟ ରହିଲା । ଖେଳୁଆଳି ପରି ଦୌଡ଼ା କି ଦୌଡ଼ା ଦେଲେ ମାତ୍ର ପାଞ୍ଚ ମିନିଟ୍‌ରେ ପହଞ୍ଚି ଯାଇହେବ । ନିଜକୁ ଅତି ଅସହାୟ ମନେକଲା ତୁଷାର । ଖେଳପଡ଼ିଆର ସ୍ୱାଗତ, ସମ୍ବର୍ଦ୍ଧନା, ଉଚ୍ଛ୍ୱସିତ କରମର୍ଦ୍ଦନ; ସମସ୍ତେ ଯେପରିକି ଅତି ଦରିଦ୍ର ଭିକାରୀ ପରି ତା ଶରୀର ସତ୍ତାରୁ ଅଲଗା ହୋଇଯାଇ ସେହି ପଛ ଲୋକଟାର ପାଦକୁ ଧରି ଆକୁଳ ମିନତି କରୁଛନ୍ତି; କେବଳ ବଞ୍ଚିରହିବା ପାଇଁ । ତାର ଅହଂକାର, ଗର୍ବ ସବୁଗୁଡ଼ାକ ସେହି ପଛର ଅଦ୍ଭୁତ ଲୋକ ପାଖରେ ଲୁହ ଢାଳି କ୍ଷମା ମାଗୁଛନ୍ତି; କେବଳ ଦାରୁଣ ମୃତ୍ୟୁ ଯନ୍ତ୍ରଣାରୁ ଶାନ୍ତି ପାଇବା ପାଇଁ ।

ଲୋକଟା ହୋ…ହୋ…ହୋଇ ହସୁଛି କି ? ନାହିଁ ତ ! ତେବେ ତୁଷାର କାନକୁ ଗୋଟାଏ ବିଭତ୍ସ ହସ ଶୁଣା ଗଲା କିପରି ? ତାହେଲେ ତା ଆଗପଟୁ କ'ଣ ଆଉ କିଏ ଆସୁଛି କି ? ପଛରୁ ଓ ଆଗରୁ ଆକ୍ରମଣ କରିବା ପାଇଁ ବୋଧେ କୌଣସି ଦଳ ଷଡ଼ଯନ୍ତ୍ର କରିଛନ୍ତି କି ? ନାହିଁ…ଆଗରେ ତ କେହି ନାହିଁ ! ପଛରେ କିନ୍ତୁ ସେହି ଲୋକଟା ଛୁଟୁଛି । ବେଶି ଦୂରରେ ନୁହେଁ—ତା'ଠାରୁ ପ୍ରାୟ ପାଞ୍ଚହାତ ଦୂର ମାତ୍ର । ଲାଗି ଲାଗି ଆସୁଛି ସେ ।

ଏଥର ତୁଷାର ଖୁବ୍ ଜୋର୍‌ରେ ଦୌଡ଼ିବାକୁ ଆରମ୍ଭ କରିଦେଲା । ମୃତ୍ୟୁ କବଳରୁ ଜୀବନକୁ ଝିମ୍ପାଇ ନେବାପାଇଁ, ଅତୀତର ସମସ୍ତ ଗର୍ବ ଗୌରବ, ଅହଂକାରକୁ ଫିଙ୍ଗିଦେଇ ଗୋଟିଏ କାତର, ନିଃସ୍ୱ, ଅସହାୟ ମଣିଷ ଦୌଡ଼ିବାରେ ଲାଗିଛି । ତା'ର ପଛେ ପଛେ ସେହି ଅଦ୍ଭୁତ ଲୋକଟା ବି ଦୌଡ଼ିବାରେ ଲାଗିଛି । ସତେକି ଏ ସୃଷ୍ଟିର ରାଜପଥରେ ଜୀବନ ଓ ମୃତ୍ୟୁ ମଧ୍ୟରେ ଏକ ଦୌଡ଼ ପ୍ରତିଯୋଗିତା ଆରମ୍ଭ ହୋଇଯାଇଛି । ଧାଇଁ ଧାଇଁ ତୁଷାର ନିଜ ଘର ଦୁଆର ମୁହଁରେ ଠିଆ ହୋଇ, ଟିକେ ଦମ୍ ନେଇ ଆଗକୁ ଚାହିଁଲା । ସେହି ଅଦ୍ଭୁତ ଲୋକଟା ମଧ୍ୟ ତୁଷାର ପଛେ ପଛେ ଧାଇଁ ଧାଇଁ ଆସି, ତା ପାଖରେ ଠିଆ ହୋଇ ଗଲା । ଚମକି ପଡ଼ିଲା ତୁଷାର । ଜୀବନ ପାଖରେ ମୃତ୍ୟୁ ଲଗାଲଗି ହୋଇ ଠିଆହେଲା ପରି ଅନୁଭବ କଲା ସେ ।

ହଠାତ୍ କବାଟ ଖୋଲି ନିଜ ରହିବା ଘର ଭିତରକୁ ପଶିଗଲା ତୁଷାର । ଲୋକଟା ବି ତା ପଛେ ପଛେ ଘର ଭିତରକୁ ପଶିଗଲା । ନିଜ ଘରେ ଠିଆ ହୋଇ ମଧ୍ୟ ନିଜକୁ ଅସହାୟ ମଣିଲା ସେ । ଲୋକଟା…? ବଡ଼ ଆଶ୍ଚର୍ଯ୍ୟ ସତେ…!!

ତୁଷାର ନ କହିବା ପୂର୍ବରୁ ସେହି କଳା କୋଟ ପିନ୍ଧା ଲୋକଟା ଗୋଟିଏ ଚଉକିରେ ବସି ପଡ଼ି ଦୀର୍ଘ ନିଶ୍ୱାସ ଛାଡ଼ିବାକୁ ଲାଗିଲା । କିଛିକ୍ଷଣ ପରେ କୋଟ ପକେଟରୁ ସିଗାରେଟ ପ୍ୟାକେଟ୍ ବାହାର କରି ନିର୍ବିକାର ଭାବେ ଗୋଟାଏ ସିଗାରେଟ ନିଜ ଦୁଇ ଓଠ ମଝିରେ ଚାପିଧରି ଡିଆସିଲି ମାରି ନିଆଁ ଧରାଇ ଧୂଆଁ ଛାଡ଼ିଲା । ବଡ଼ ଉଦାସ ଭାବେ ତୁଷାର ଆଡ଼କୁ ଚାହିଁ କହିଲା—"ଅଦ୍ଭୁତ ଆପଣ ! ଆପଣଙ୍କ ପଛରେ ମୁଁ ଦୌଡ଼ି ଦୌଡ଼ି ବେଦମ ହୋଇଗଲଣି । କାହିଁକି ଆପଣ ଏପରି ବ୍ୟସ୍ତ ହୋଇ ଦୌଡ଼ିବାକୁ ଆରମ୍ଭ କଲେ କିଛି ବୁଝା ଯାଏନା ।"

ଅଜଣା ଲୋକଟା ନିଜ ପ୍ୟାଣ୍ଟ ପକେଟରୁ ପିସ୍ତଲଟା ବାହାର କରି ପୁନର୍ବାର ଭଲ ଭାବରେ ଦେଖି ନେଇ କହିଲା—"ଠିକ୍

ଅଛି । ପୁଣ ଲେଡ଼୍ କରି ରଖିଛି ମୁଁ, ସଙ୍ଗେ ସଙ୍ଗେ କାମ ଦେଇଥାନ୍ତା ।"

ତୁଷାର ମୁଣ୍ଡ ଝାଇଁ ଝାଇଁ ମାରିଗଲା । ଅତି ଭୟରେ ତା'ର ମୁହଁରୁ ବାହାରି ପଡ଼ିଲା—"ଆପଣ···???"

—"ଓଃ ! ପାଣି ଗିଲାସେ ପିଆନ୍ତୁ ନା । ସତରେ ଆପଣଙ୍କ ପାଇଁ ବହୁ ପରିଶ୍ରମ କରିବାକୁ ପଡ଼ିଲା । ପାଣି ଗିଲାସଟାଏ ପରେ ମୁଁ ଚାଲିଯିବି ।"

ଲୋକଟାର କି ଔଦ୍ଧତ୍ୟ ! ଆରାମରେ ବସି ପାଣି ପିଇବାକୁ ମାଗୁଛି ?···ତୁଷାର ମନରେ ବିସ୍ମୟର କୁହେଳି ।

ଉପାୟହୀନ ଭାବେ ତୁଷାର ପାଣି ଆଣିବା ପାଇଁ ନିଜ ବେଡ଼ରୁମ ଘର ଆଡ଼କୁ ଚାଲିଗଲା । ମନେ ମନେ ଭାବୁଥିଲା— 'ପୋଲିସକୁ ଖବର ଦେଇ ଦେଲେ ମଜା ବାହାରି ଯାଆନ୍ତା; କିନ୍ତୁ··· ଉପାୟ କ'ଣ ?'

+ + + +

ଲୋକଟା ଢକ୍ ଢକ୍ କରି ଦୁଇ ଗ୍ଲାସ ପାଣି ପିଇ ପୁଣି ଦୀର୍ଘଶ୍ୱାସ ଛାଡ଼ି କହିଲା—"ଆପଣ ଏକୁଟିଆ ରହନ୍ତି ?"

ଚମକିପଡ଼ିଲା ତୁଷାର । ଅତୀତର ଏକ ଉକ୍ତ ଘଟଣା-ବିଜଡ଼ିତ ସ୍ୱରର ପୁନରାବୃତ୍ତି ତାର ମନକୁ ଦୋହଲାଇ ଦେଲା । ଠିକ୍ ଏହିପରି ଏକ ରାତିରେ ଏମିତିକା କଣ୍ଠସ୍ୱର ସେ ଶୁଣିବାକୁ ପାଇଥିଲା । ଅବଶ୍ୟ ସେ ସ୍ୱରରେ କିଛିଟା କାରୁଣ୍ୟର ଆଭାଷ ଥିଲା । ତେବେହେଲେଟା ମଧ୍ୟ ଅତୀତର ସେହି ବିଭତ୍ସ ସ୍ମୃତି ସହିତ କିଛିଟା ମେଳଖାଇ ଯାଉଥିଲା । ଅନ୍ୟମନସ୍କ ହୋଇ ଉଠିଲା ତୁଷାର ।

ପୁନର୍ବାର ଲୋକଟା ବଡ଼ ପାଟିରେ ପଚାରିଲା—"ଆପଣ ଏକୁଟିଆ ରହନ୍ତି ??"

ତୁଷାର ଭାବିଲା—ଏଭଳି ଟିଆ ରହିବା କଥା କହିଲେ ଲୋକଟା ବେଖଯରବାପୁ ଭାବେ ନିଜର ଉଦ୍ଦେଶ୍ୟ ନିଷ୍ଫଳ ଚରିତାର୍ଥ କରିନେବ । ତେଣୁ ଆଉ ଜଣଙ୍କ ନାମ ମିଛରେ କହିବା ପାଇଁ ସେ କହିଲା—"ନାଁ।—ଆମେ ଦୁଇଜଣ ରହୁ ।"

—"ଅନ୍ୟ ଜଣକ···?"

—"ମୋର ଗୃହର ଟୋକା । ଭିତରେ ସେ ଶୋଇ ଯାଇଛି । ମୁଁ ତାକୁ ବର୍ତ୍ତମାନ ଉଠାଇ ଦେଇ ଆସିଛି । ସେ ଏଇ-କ୍ଷଣି ଆସିଯିବ ।"

—"ମୁଁ ମଧ୍ୟ ଏଇକ୍ଷଣି ଚାଲିଯିବି । ଯିବା-ଆସିବା ଏମିତି ସବୁବେଳେ ଲାଗିରହିଛି । ଆପଣଙ୍କର ଫୁଲହାରଗୁଡ଼ାକ ନେଇ-ନିଅନ୍ତୁ ତା ହେଲେ ।"

ଲୋକଟା ନିଜ ବେକରୁ ଗଜରାମାଳଗୁଡ଼ାକ ବାହାରକରି ତୁଷାର ଟେବୁଲ ଉପରେ ଥୋଇ ଠିଆ ହୋଇ କହିଲା—"ଶୁଭ ରାତି ଆଜ୍ଞା । ଏଥର ବିଦାୟ ଦିଅନ୍ତୁ । ମତେ ଗୁଡ଼ାଏ ବାଟ ଯିବାକୁ ପଡ଼ିବ ।"

ଲୋକଟା ନିଜର ପିସ୍ତଲକୁ ପ୍ୟାଣ୍ଟ ପକେଟ୍‌ରେ ଭର୍ତ୍ତିକରି ଘର ଦରଜା ଡ଼େଇଁ ପଦାକୁ ଆଗେଇଲା ।

ତୁଷାର ବର୍ତ୍ତମାନ ଭାବିନେଲା ଲୋକଟା ତାକୁ ମାରିବାପାଇଁ ଆସି ନ ଥିଲା । ତେବେ ସେ କିଏ ଓ କାହିଁକି ଆସିଥିଲା ? ସାହସ ସଞ୍ଚୟ କରି ସେ କହିଲା—"ଶୁଣିବେ କି ଆଜ୍ଞା !"

—"ମୋତେ ଡ଼ାକିଲେ ?"—ଲୋକଟା ଉତ୍ତର ଦେଇ ପୁଣି ଘର ଭିତରକୁ ବୁଲି ପଡ଼ିଲା ।

ବିସ୍ମୟରେ ତୁଷାର କହିଲା—"ଆପଣ···?"

—"ମୁଁ ? ମୋ ପରିଚୟ ଆପଣ ବୁଝୁଛନ୍ତି ? ମୁଁ ହେଉଛି ଆଲୋକ ମିଶ୍ର । ତିନିବର୍ଷ ତଳେ ଆପଣ ସମ୍ବାଦ ପତ୍ରରେ ପଢ଼ିଥିବେ

ପ୍ରସିଦ୍ଧ ଫୁଟ୍‌ବଲ ଖେଳାଳୀ ବିଜୟ ମିଶ୍ରଙ୍କର ହତ୍ୟା ଖବର । ମୁଁ ହେଉଛି ସେହି ବିଜୟ ମିଶ୍ରଙ୍କର ବଡ ଭାଇ । ତିନ ବର୍ଷ ତଳେ ଫୁଟବଲ ଖେଳରେ ଚମ୍ପିୟନ ହୋଇ ବିଜୟ ଘରକୁ ଫେରୁଥିଲାବେଳେ ତାକୁ ହତ୍ୟା କରାଯାଇଥିଲା । ଠିକ୍ ବିଜୟର ଚେହେରା ସହିତ ଆପଣଙ୍କର ଅନେକଟା ସାମଞ୍ଜସ୍ୟ ରହିଛି ! ତା'ର ନାକଟା ଠିକ୍ ଆପଣଙ୍କ ନାକପରି ଅତି ସରୁଆ । ମୁଣ୍ଡର ବାଳ, ଓଠ, କାନ ଓ ଆଖି ଏ ସବୁଗୁଡ଼ାକ ବିଜୟ ସହିତ ଆପଣଙ୍କର ଅନେକଟା ମିଳି ଯାଉଛି । ମୋର ମନେ ହେଲା—ଆପଣ ବୋଧେ ଆଜି ସେହି ଅଦୃଶ୍ୟ ମୃତ୍ୟୁ ହାବୁଡରେ ନିଶ୍ଚୟ ପଡିଯିବେ । ତେଣୁ ନିରାପଦରେ ମୁଁ ଆପଣଙ୍କୁ ଆପଣଙ୍କର ଘରେ ଛାଡ଼ିଦେଇ ପାରିଥିବାରୁ ଖୁବ୍ ଖୁସି ଆଜି । ଧନ୍ୟବାଦ । ପୁଣି ସୁବିଧା ହେଲେ ଦେଖାହେବ । ଶୁଭ ସନ୍ଧ୍ୟା ।"

ଲୋକଟା ଦ୍ରୁତ ଗତିରେ ଆଗକୁ ଚାଲି ଯାଉଥିଲା । ତୃଷାର ଟେବୁଲ ଉପରୁ ଫୁଲହାରଗୁଡ଼ାକ ଉଠାଇଲାବେଳେ ହଠାତ୍ ଚମକି ପଡ଼ିଲା ଯେ । ଅଶାନ୍ତର ପ୍ରତିଶୋଧ ପାଇଁ ଆଲୋକ ମିଶ୍ର ତା ହେଲେ ଏ ଚକ୍ ଚକ୍ କରୁଥିବା ଜିନିଷଟାକୁ ଛାଡ଼ିଯାଇଛି ନିଶ୍ଚୟ । ଅଶାନ୍ତକୁ ସିଏ କ'ଣ ଆବିଷ୍କାର କରି ପାରିଛି ? ତୃଷାର ପଦାକୁ ଚାହିଁଲା । ଆଲୋକ ମିଶ୍ର ଅନ୍ଧାର ଭିତରେ ହଜିଗଲେଣି । ସେ ଅନୁଭବ କଲା—ଭୟ ବିଜଡ଼ିତ ତା'ର ଓଦାଳିଆ ଆଖି ଦୁଇଟା ଝାପ୍‌ସା ଦେଖାଯାଉଛି । କବାଟ ବନ୍ଦକଲା ତୃଷା'ର ।

ଏଁ... ଏକ'ଣ ? ପୁଣି ଏ ଘର ଭିତରେ କାହାର ପାଦ ଶବ୍ଦ ଶୁଭୁଛି ! ଚମକି ପଡ଼ିଲା ତୃଷାର । ଚାରିଆଡ଼କୁ ଚାହିଁଲା ସେ । କାହିଁ—କେହିତ ନାହିଁ ?? ଇସ୍ ! ଏ କାହାର ହସ ? ମୁଣ୍ଡଟାକୁ ଚାପିଧରି ଚେୟାର ଉପରେ ବସିପଡ଼ିଲା ସେ । ଚମକି ପଡ଼ି ପୁଣି ଆଗକୁ ଚାହିଁଲା—ଟେବୁଲ ଉପରେ ପଡ଼ିରହିଥିବା ସେହି ଚକ୍ ଚକ୍ ବସ୍ତୁଟା କ୍ରମେ କ୍ରମେ ଆହୁରି ଉଜ୍ଜ୍ୱଳ ହୋଇ ଉଠୁଛି । ବାଘର ଗର୍ଜନ ପରି ତା ଭିତରୁ ଭୟଙ୍କର ଗର୍ଜନ ଶୁଣାଯାଉଛି । କ୍ରମେ କ୍ରମେ ସେହି ଚକ୍ ଚକ୍ କରୁଥିବା ବସ୍ତୁଟା ଘରସାରା ଯେପରି କ

ଚନ୍ଦ୍ରାପ୍ତ ଘୂରିବାକୁ ଆରମ୍ଭ କରୁଥିବା ପରି ତାକୁ ଜଣାଗଲା । ଏଁ !··· ଏ କ'ଣ ? ଅନ୍ଧାରରେ ସେହି ମୃତ ଖେଳାଳୀର ଆତ୍ମା ଭୟଙ୍କର ଏକ ଜୀବନ୍ତ କଙ୍କାଳଭାବେ ତା'ର ଆଗରେ ଠିଆ ହୋଇ ଅଟ୍ଟହାସ କରୁଛି । ତାର ବିକଟ ମାଂସହୀନ ବାହୁ ଦୁଇଟାକୁ ବିସ୍ତାର କରି ତୁଷାରକୁ ଆହ୍ୱାନ ଦେଉଛି ।

—"କିଏ ? କିଏ ?" ତୁଷାର ଚିତ୍କାର କରି ଉଠିଲା ।

ପ୍ରତିଧ୍ୱନିରେ ଘର ଚମକି ଗଲା ।

—"କିଏ ? କିଏ ?? ବିଜୟ ? ବିଜୟ ?? ତୁ···ତୁ ? କ'ଣ ସେଦିନ ପାଇଁ ମୋର କ୍ଷମା ନାହିଁ ??"

ନ ହିଁ···ନାହିଁ···ନାହିଁ···ପ୍ରତିଧ୍ୱନି, ଗୋଟିଏ ଶବ୍ଦକୁ ବାରମ୍ବାର ଦୋହରେଇ ଦୋହରେଇ ଘରର ବାୟୁମଣ୍ଡଳକୁ ଗରମ କରି ଦେଉଛି ।

—"ମୁଁ—ମୁଁ—ହଁ···ମୁଁ ତୋର ହତ୍ୟାକାରୀ । ମୋର ଗତିପଥରୁ ମୁଁ ମୋର ପ୍ରତିଦ୍ୱନ୍ଦୀ ଚିରେ ହଟାଇ ଦେବାକୁ ଗୁଳି ଚଳାଇ ଥିଲି ଆଜକୁ ଠିକ୍ ତିନିବର୍ଷ ତଳେ ।"

ଚିତ୍କାର କରୁଛି ତୁଷାର । ଆଲୋକ ମିଶ୍ର ଆଗରେ ଅନ୍ଧାରଟାକୁ ଖୋଲି ଦେଇଥିଲେ ଭଲ ହୋଇଥାନ୍ତା ; କିନ୍ତୁ ଆଲୋକ ମିଶ୍ର ଯେତେ-ବେଳେ ଶୁଣିଥା'ନ୍ତା—ତାର ଭାଇକୁ ସେ ହତ୍ୟାକରି ଖେଳାଳୀର ଚମ୍ପିୟନ ଗୌରବ ନେବାପାଇଁ ଚେଷ୍ଟା କରିଛି ବୋଲି, ସେତେବେଳେ ସେ କଣ ତାକୁ କ୍ଷମା ଦେଇ ପାରିଥା'ନ୍ତା ? ଯନ୍ତ୍ରଣାରେ ବ୍ୟତିବ୍ୟସ୍ତ ହୋଇ ଉଠିଲା ସେ । ଫୁଲହାରଗୁଡ଼ାକ ନାଗ ସାପ ପରି ଫଣା ତୋଳି ତାକୁ ଦଂଶନ କରିବା ପାଇଁ ଛୁଟି ଆସୁଛନ୍ତି ସତେ ଯେପରି ।

ତୁଷାର ମୁକ୍ତି ଚାହେଁ—ଯନ୍ତ୍ରଣାରୁ ନିସ୍ତାର ଚାହେଁ । ଓଃ ! ଛାତି ଭିତରର କଲିଜାକୁ ଅନ୍ଧାରର ମୃତ ବିଜୟ ମିଶ୍ର ଫାଡ଼ି ଫାଡ଼ି କରି ବିଦାରିବାରେ ଲାଗିପଡ଼ିଛି । ନାଃ ! ଆଉ ସମ୍ଭବ ନୁହେଁ । ତୁଷାର ବିଚଳିତ ହୋଇ ଉଠିଲା । ଘରର ବତୀ ଲିଭାଇ ଦେଲା ସେ । ତା ପରେ ଏକ ଯନ୍ତ୍ରଣାର ସ୍ୱର । ସକାଳ ପର୍ଯ୍ୟନ୍ତ ଆଉ କିଛି ଜଣାଯାଇନି ।

\+ \+ \+

ପରଦିନ ସନ୍ଧ୍ୟା ଖବର କାଗଜରେ ପ୍ରକାଶ ପାଇଥିଲା—ପ୍ରସିଦ୍ଧ ଖେଳାଳୀ ତୁଷାରଙ୍କର ଆତ୍ମହତ୍ୟା କରିଥିବା ସମ୍ବାଦ ।

ସମ୍ବାଦଟି ପଢ଼ି ଆଲୋକ ମିଶ୍ର ଅନୁଭବ କଲା ତାର ପରିଶ୍ରମ ବ୍ୟର୍ଥ ହୋଇ ଯାଇଛି । ତୁଷାର ନିଶ୍ଚୟ ଆତତାୟୀ ହାତରେ ନିହତ ହୋଇଛି;···କିନ୍ତୁ ସେ ଆତତାୟୀ କିଏ ? ସେ ନିଜେ ନୁହେଁ ତ···? ଚମକି ପଡ଼ିଲା ସେ । ନିଜ କୋଟ୍ ପକେଟରେ ହାତ ପୂରାଇ ଦେଖିଲା ତା ଛୁରୀଟା ପକେଟରେ ନାହିଁ—ସେ ତାକୁ ତୁଷାରର ଟେବୁଲ ଉପରେ ଛାଡ଼ି ଦେଇ ଆସିଛି ଗତ ରାତିରେ ।



# ଗୁରୁବାରଆ ଟଙ୍କା

ଇତିହାସରେ ଲିପିବଦ୍ଧ ନ ହେବା ଭଳି ସେଇ ଯେଉଁ ଏକ ଘଟଣା ଘଟିଯାଇଥିଲି ତାକୁ ହୁଏତ ବହୁଲୋକ ପଢ଼ିବାକୁ ଆଗ୍ରହୀ ହୋଇ ନ ପାରନ୍ତି ; କିନ୍ତୁ ମହାକାଳର ପ୍ରବହମାନ ସ୍ରୋତର ଗୁନ୍ତରେ, ସେ ଘଟଣା ମାତ୍ର ସାମାନ୍ୟ ଏକ ବୁଦ୍‌ବୁଦ ସୃଷ୍ଟି କରି ପୁଣି ହଜି ଯାଇଥିଲି । ବୁଦ୍‌ବୁଦର ସେହି ବିଲୁପ୍ତ ସତ୍ତାକୁ ଟିକିଏ ସମ୍ମାନ ଦେବାପାଇଁ ଆପଣଙ୍କ ଆଗରେ ସେ କଥାକୁ ବିନେଇଚୂନେଇ ପରିବେଷଣ କରିବାର ତାତ୍ପର୍ଯ୍ୟ କିଛି ଅଛି ବୋଲି ଯଦି ମନେ କରନ୍ତି ତାହେଲେ ଆସନ୍ତୁ ଆମେ ସମସ୍ତେ ସେହି ଘଟଣା ବିଷୟରେ ଆଳାପ ଆଲୋଚନା କରିବା ।

ଆଗରେ ସେହି ଅଜାତର ବୁଦ୍‌ବୁଦ । ତହିଁର ଚିତ୍ରକୁ ଦେଖି-ଯାଆନ୍ତୁ; ଏବଂ ଏକ ଗଳ୍ପ ଭାବେ ତାକୁ ଉପଭୋଗ ବି କରି ଯାଆନ୍ତୁ । ସେ ଗଳ୍ପ—ସମାଜର ଏକ ସାମାନ୍ୟ ଚିତ୍ରକୁ ନେଇ । ସମସ୍ତେ ସେହି ବିଷୟରେ ଆଲୋଚନା କରିବାକୁ ଆରମ୍ଭ କଲେ । ବିଷୟ—ବସ୍ତୁର ମୁଖ୍ୟ ଭାଗରେ ସିହ୍ନା ସାହେବଙ୍କର କାର୍ଯ୍ୟକଳାପ ବିସ୍ମୟର କାରଣ ହୋଇ ଉଠିଲି ।

ସିହ୍ନା ସାହେବ···? ହଁ ହଁ କୋଟିପତି ସିହ୍ନା ସାହେବ । ଗଦି ଉପରେ ଗଣି ଚାଲୁଥିଲେ ତାଡ଼ା ତାଡ଼ା ନୋଟ୍ । ପାଞ୍ଚ···ଦଶ···ଶହେ ···ହଜାର···ଦଶ ହଜାର···ଲକ୍ଷେ···ଦଶ ଲକ୍ଷ···। ଶିଳ୍ପପତି ସିହ୍ନା ସାହେବଙ୍କର କ୍ୟାସ୍ ବାକ୍‌ସରେ ତାଲି ପଡ଼ିଲି । ତାଲିକୁ ଭଲଭାବେ ପରୀକ୍ଷା କରି ନେଲେ ସେ । ଠିକ୍ ଅଛି ତାଲି । ଆଶ୍ୱସ୍ତିର ନିଶ୍ୱାସ ଛାଡ଼ିଲେ ସିହ୍ନା ସାହେବ ।

ଆସନ୍ତା କାଲି ଗୁରୁବାର । ଲକ୍ଷ୍ମୀଙ୍କର ଦିନ ସିଏ—ଏ ବାକ୍‌ସ ଆଉ ଖୋଲିବନି ସେ ଦିନ । ସିହ୍ନା ସାହେବଙ୍କ ମନରେ କେଉଁ କାଳର

ଏକ ପୁଞ୍ଜିଭୂତ ଆଶଙ୍କା— ଗୁରୁବାରରେ ଏ ବାକ୍ସରେ ହାତ ଲଗିଲେ ଲକ୍ଷ୍ମୀ ରୁଷିବେ । ସବୁ ଉଭେଇ ଯିବ—ନଷ୍ଟ ହୋଇଯିବେ ସେ ।

ଜୀବନର ସମସ୍ତ ମଉଜ ହାତମୁଠାରୁ ଖୁବ୍ ଦୂରକୁ ପଳେଇ ଯିବ । ସିହ୍ନା ସାହେବ—ଟଙ୍କାର ମଣିଷ—ପଇସାର ଇଜ୍ଜତ ବୁଝନ୍ତି ସିଏ । ଟଙ୍କାକୁ ଟଙ୍କା ସହିତ ଲଢ଼େଇ କରାନ୍ତି । ପଇସା ଉପରେ ମଣିଷର ଜୀବନକୁ ବାଜି ଲଗାନ୍ତି । ପଳେଇ ଯାଉଥିବା ପଇସାକୁ ଧରିଆଣିବା ପାଇଁ ତା ପଛରେ ରିକ୍ସା, କାର ଛୁଟାନ୍ତି । ଦୂରର ପଇସାକୁ ପାଖକୁ ଆଣିବା ପାଇଁ ପଇସା ପଛରେ ଟ୍ରେନ୍ ଛୁଟେ; ଉଡ଼ାଜାହାଜ ବି ଛୁଟେ । ହଜିଲା ପଇସାକୁ ଖୋଜିବା ପାଇଁ ସାତତାଳ ପଙ୍କ ଘଣ୍ଟାଯାଏ । ସାତ ସମୁଦ୍ର ବାଲିକୁ ଓଲଟ ପାଲଟ କରାଯାଏ । ସାଗରର ଅକଳନ୍ତ ପାଣିକୁ ଶୁଖାଇ ଦେବାକୁ ଚେଷ୍ଟା କରାହୁଏ । ସିହ୍ନା ସାହେବ ଭାବନ୍ତି—ପଇସାର ଗୋଲାମ ସମସ୍ତେ ।

ମୁଣ୍ଡରେ କାଳିଆ ଟୋପି ଦେଇ ଦିନ ନଅଟାରେ ସିହ୍ନା ସାହେବଙ୍କର ମୁନିମ୍ ଆସେ । ପଇସାର ହିସାବ ଲେଖେ ସେ । ଟଙ୍କାକୁ ଏକ, ଦୁଇ କରି ଦଶଥର ଲେଖାଁ ଗଣେ । ଚଷମାର ପ୍ରତି ବିନ୍ଦୁରେ ଝଲସି ଉଠେ ବଡ଼ା ବଡ଼ା ନୋଟର ଛୁଇ । ଟଙ୍କାର ଅଙ୍କ କଷାରେ ବଡ଼ା ବଡ଼ା କାଗଜ ପଇଁ ଗୋଟା ଦୁଇଟା କାଳିଡ଼ବା ସରିଯାଏ ।

ମୁନିମ୍...ପଇସାର ହିସାବ ପାଇଁ ମୁନିମ୍—ପଇସା ଗଣିବା ପାଇଁ ମୁନିମ—ପଇସା ଜମିବା ପାଇଁ ମୁନିମ । ଶେଷରେ ପଇସା ପାଇଁ ହାତ ପତାଏ ମୁନିମ୍ । ସିହ୍ନା ସାହେବ ମାସ ଶେଷରେ କିଛି ଟଙ୍କା ଦିଅନ୍ତି ମୁନିମ୍‌କୁ । ମାସକର ଖାଟେଣୀର ଇନାମ ସିଏ । ପଇସା ବାଜି ଲଗାଇ ମୁନିମ୍‌ର ମଗଜକୁ ସିହ୍ନା ସାହେବ ଅକ୍ତିଆର କରି ନେଇଛନ୍ତି ।

ହେଇ, ଦରଓ୍ୱାନ ସଲାମ କରୁଛି ଫାଟକ ପାଖରେ ଠିଆ ହୋଇ । ସେ ଜଗି ରହିଛି ସିହ୍ନାସାହେବଙ୍କର ମସ୍ତବଡ଼ ସାତ ତାଲା କୋଠାକୁ । ଶୁଣ; ମସ୍ତବଡ କଳା ମୁରୁ ମୁରୁ ଆଲ୍‌ସେସିଆନ କୁକୁରଟା ଭୁକୁଛି । ନିମକ ଖାଉଛି ସିହ୍ନାସାହେବଙ୍କର ସିଏ—ନାଁ...ନାଁ...

ପଇସା ଖାଉଛି ସିହ୍ନା ସାହେବଙ୍କର ସେହି ବାଘପର; କାଳିଆ କୁକୁରଟା ତେଣୁ ଛେଳି ପରି ସିଏ ବି ପୋଷାମାନିଛି ।

ମାଳି ଅସ୍ତବ୍ୟସ୍ତ ହୋଇ ବଗିଚାର ଏ ମୁଣ୍ଡରୁ ସେ ମୁଣ୍ଡ ପର୍ଯ୍ୟନ୍ତ ପାଣି ମଡ଼ାଇବାରେ ଲାଗିଛି । ଗଛରେ ଫୁଲ ଫୁଟିବ । ସିହ୍ନା ସାହେବ ଖୁସି ହେବେ । ତାପରେ ମାସ ଶେଷରେ ମାଳି ହାତକୁ ଆସିବ ସିହ୍ନା ସାହେବଙ୍କର ଇନାମ୍ ହିଆ—ଟଙ୍କା...ତା'ର ଦରମା ସିଏ ।

ସିହ୍ନା ସାହେବ ନୂତନ ବିଜ୍ଞାନ ଜାଣନ୍ତି । ତାଙ୍କ ବିଜ୍ଞାନର ସୂତ୍ର ହେଉଛି—ଟଙ୍କା+ପଇସା+ନୋଟ୍+ସୁନା+ରୂପା+ଜହରତ =ଜୀବନ । ଜୀବନ ଅର୍ଥାତ ସିହ୍ନା ସାହେବଙ୍କର ଏହି ସୂତ୍ର ସବୁର ସମଷ୍ଟି ଥିଲେ ପଶୁ ମଣିଷ ହୁଏ । ଜୀବନ ନ ଥିଲେ ମଣିଷ ପଶୁ ହୁଏ । ଏ ତତ୍ତ୍ୱକୁ ଦୃଢ଼ ଭାବେ ମାନନେଇଛନ୍ତି ଓ ବିଶ୍ୱାସ କରନ୍ତି ସିହ୍ନା ସାହେବ ।

ସିହ୍ନା ସାହେବ ନିଜେ ଅଗଣାରେ ରାମାୟଣ ପାଠ କରନ୍ତି । କାରଣ ବିଷ୍ଣୁ ତାଙ୍କ ଉପରେ କୋପ କରିବେ ନାହିଁ । ଲକ୍ଷ୍ମୀଙ୍କୁ ଖୁସି କରିବା ପାଇଁ ସିହ୍ନା ସାହେବ ଆପ୍ରାଣ ଚେଷ୍ଟା କରି ଆସିଛନ୍ତି । ତାଙ୍କର ଜୀବନ ଏକ ପୁଞ୍ଜିଭୂତ ସୁନା ରୂପାର ଜୀବନ । ସେ ଦାନ କରନ୍ତି । ଗରିବକୁ ଦିଅନ୍ତି—ଦୁଇଗୁଣ ବି ଗରିବଙ୍କ ଠାରୁ ବେପାର ଛଳରେ ନେଇ ନିଅନ୍ତି । ଯୁକ୍ତ ବିଯୁକ୍ତର ଅଙ୍କ କଷାରେ ଯୁକ୍ତର ବୃଦ୍ଧି ସଂଖ୍ୟା ଉପରେ ସେ ସବୁବେଳେ ନଜର ଦେଇଆସିଛନ୍ତି । ଆୟୁ ବୃଦ୍ଧିର ବିବରଣୀ ଲିପିବଦ୍ଧ ପାଇଁ ହିସାବ ଖାତା ମୋଟା ହୁଏ । ବ୍ୟାଙ୍କ୍ ଧନ ବଢେ । କୋଠା ଉପରେ କୋଠା ହୁଏ । ଜମିର ଦୈର୍ଘ୍ୟ ଓ ପ୍ରସ୍ଥ ଧୀରେ ଧୀରେ ପ୍ରସାରିତ ହୁଏ ।

ଆସନ୍ତାକାଲି ଗୁରୁବାର । ଟଙ୍କା ବାକ୍ସର ଚାରିଆଡ଼େ ହାତ ବୁଲାଇ ଦେଖିନେଲେ ସିହ୍ନା ସାହେବ । ତାଲା ଠିକ୍ ଅଛି । ବାକ୍ସ ବି ଠିକ୍ ଅଛି । ଦୁଇ ଜଣ ମଜଭୁତ ଦରୱାନ ବାକ୍ସକୁ ଘର ଭିତରକୁ ଉଠାଇ ନେଲେ । ଟଙ୍କା ବାକ୍ସ ଘର ଭିତରକୁ ଗଲା । ପଛେ ପଛେ ସିହ୍ନା

ସାହେବ ଆସିଥିଲେ । ଆଖି ଦୁଇଟା ବାକ୍ସ ଉପରେ ସ୍ଥିର ରହିଥିଲା । ଘର ଭିତରେ ଥିବା ଲୁହା ଆଲ୍‌ମିରା ଭିତରେ ବାକ୍ସ ରହିଲା । ଆଲ୍‌ମିରାରେ ବରାଟ ତାଲା ପକାଇଲେ ସେ । ଦୁଇ ହାତରେ ଆଲ୍‌ମିରାର କବାଟକୁ ଟାଣି ଝୁଙ୍କାଇ ଦେଇ ଦେଖିନେଲେ ସେ । ସବୁ ଠିକ୍ ଅଛି ।

ଘଣ୍ଟାରେ ଠଣ୍ ଠଣ୍ ହୋଇ ଏଗାରଟା ବାଜିଲା । ରାତି ଏଗାର । ରାତି ବାରଟା ପରେ ଆସିବ ଗୁରୁବାର । ଅଦୃଶ୍ୟରେ ସିହ୍ନାସାହେବଙ୍କ ମଥା ଉପରେ ଲକ୍ଷ୍ମୀଙ୍କର ଆଶୀର୍ବାଦ ହାତ ଛୁଇଁଯିବ । ଟଙ୍କା ଗୁଣିବାର ଜାଲ ଘର ଭିତରେ ରଖିଦେଇ ଯିବେ ମାଆ ଲକ୍ଷ୍ମୀ ଠାକୁରାଣୀ । ଗୁରୁବାର···ଗୁରୁବାର··· ! ବଡ଼ ସାବଧାନ ହୋଇ ଚଳିବେ ସିହ୍ନାସାହେବ । ଗୋଟିଏ ପଇସା ପାଖରୁ ଗୁଡ଼ିବେ ନାହିଁ ଏହି ଦିନ ସେ । ବୁଧବାର ଦିନଠାରୁ ଗୁରୁବାର ପାଇଁ ସବୁ ବଜାର ସଉଦା କଣା ସରିଛି । ଅତି ହୁସିଆର ହୋଇ ଚଳିବେ ସିହ୍ନା ସାହେବ ।

ଗୁରୁବାର । ସକାଳର ସୂର୍ଯ୍ୟଙ୍କୁ ପ୍ରଣତି ଜଣେଇଲେ ସେ । ଆଜି ଦିନଟାରେ କେହି କିଛି ଯେପରି ନ ମାଗନ୍ତି—ସେଥିପାଇଁ ସେ ସୂର୍ଯ୍ୟଙ୍କୁ ଯୋଡ଼ ହାତରେ ପ୍ରାର୍ଥନା କରି ଗୁହାରି କରିଛନ୍ତି । ସମସ୍ତ ଗୃହର ଲାଗିପଡ଼ି ତାଙ୍କ ଘରକୁ ଧୂଆପୋଛା କରିଛନ୍ତି ।

ସ୍ନାନ, ପୂଜା ଶେଷକରି ଲକ୍ଷ୍ମୀଙ୍କର ପାଦୋଦକ ସାରା ସିରସ୍ତା ଘରେ ସିଞ୍ଚିଦେଲେ ; ପୂଜା ଫୁଲ ପଇସା ବାକ୍ସ ଉପରେ ଥୋଇ ଗଦିରେ ବସିଲେ ସେ । ହିସାବ ଖାତା ଉପରେ ମାଆଙ୍କର ସିନ୍ଦୁର ଲଗାଇ ହାତଯୋଡ଼ି ଗୁଣୁଗୁଣୁ ହୋଇ ଦୁଇମିନଟ୍ ଆଖିବୁଜି ବସିବା ପରେ ଖାତା ଉପରେ ମୁଣ୍ଡ ଲଗାଇ ଦଣ୍ଡବତ କଲେ । ସିରସ୍ତା କାମ ଆରମ୍ଭ କରିବାକୁ କଲମ ଧରି ଦୁଇଥର 'ଶ୍ରୀ ଶ୍ରୀ ଶୁଭମସ୍ତୁ' ଲେଖିବାକୁ ଲାଗିଲେ ।

—"ଶେଠ ମାହେବ !"

ଡାକ ଶୁଣି ସିହ୍ନାସାହେବ ଆଗକୁ ଚାହିଁଲେ । ଆଗରେ ବଟିଆର ମାଳି 'ଭଜ ନାଆକ' ହାତ ଯୋଡ଼ି ଠିଆ ହୋଇଛି । କୁଣ୍ଠିତ

ଦୃଷ୍ଟିରେ ଡ଼ର ଡ଼ର କହୁଛି—"ଶେଠ ସାହେବ ! ଆଠଦିନ ଆଗରୁ କହିଥିଲି ସାହେବ—ଆଜ ଶହେ ଟଙ୍କା ଦରକାର । ବଡ଼ଡ଼ାକ୍ତର-ଖାନାର ବଡ଼ ହାକିମ କହିଛନ୍ତି—ଆଜ ପୁଅକୁ ରକ୍ତ ଦିଆଯିବ । ସବୁ ସବୁ କରି ଖୁବ୍ କମରେ ଶହେ ଟଙ୍କା ପଡ଼ିବ । ଆଜ ଟଙ୍କା ନ ଦେଲେ ପୁଅ ଆଶା ଛାଡ଼ିବାକୁ ପଡ଼ିବ ବୋଲି ଡ଼ାକ୍ତରବାବୁ କହିଛନ୍ତି । ପିଲାଟା ମରିଯିବ ଶେଠଜି ! ଆଗରୁ କହିଥିଲି । ଆଜ ଶହେ ଟଙ୍କା ଦରକାର ସାହେବ ।"

ସିହ୍ନାସାହେବ ଚମକି ପଡ଼ିଲେ । ଗୁରୁବାର !! ଭଜ ନାଆକ ମୁଣ୍ଡରେ କ'ଣ ବୁଦ୍ଧି ନାହିଁ ? ସିହ୍ନା ସାହେବଙ୍କର ମୁହଁରେ ଆଶଙ୍କାର ଛାୟା । ଆଖିରେ କଠୋର ଚାହାଣୀ । ମନରେ ସନ୍ଦେହର କୁହେଳି ।

ଭଜ ନାଆକ ହାତ ଯୋଡ଼ି କହୁଛି—"ଯିବ ସାହେବ—ଚଞ୍ଚଳ ବଡ଼ଡ଼ାକ୍ତରଖାନା ଯିବ । ଆପଣ ମୋର ଦାନାଦାର । ଗରିବ କଥା ବୁଝ ଶେଠଜି ।"

ସିହ୍ନା ସାହେବଙ୍କ ମୁଣ୍ଡରେ ବଜ୍ର ପଶିଗଲା । ଗୁରୁବାର ! ଭଜ ନାଆକ ଟଙ୍କା ମାଗୁଛି । ଲକ୍ଷ୍ମୀଙ୍କୁ ଲୁଟିନେବା ପାଇଁ ଚେଷ୍ଟା କରୁଛି ସେ । ନାଁ—ହୋଇ ପାରିବନି । ପୁଅ ଫୁଅ କୌଣସି କଥା ସେ ଶୁଣିବେନି । କଠୋର କଣ୍ଠରେ ସିହ୍ନାସାହେବ ଉତ୍ତର ଦେଲେ—"ଆଜ ହୋଇପାରିବନି । ଗୁରୁବାର ମୁଁ କାହାରିକୁ ଟଙ୍କା ଦିଏନା ।"

ଭଜ ନାଆକ ଆତ୍ମା ଥରି ଉଠିଲା । ଛାତି ଉଠୁ ପଡ଼ ହେଲା । ଗୋଟିଏ ବୋଲି ପୁଅ । ତା'ର ରକ୍ତ ଦରକାର । ରକ୍ତ ପାଇଁ ଟଙ୍କା ନିହାତି ଦରକାର । ଭଜ ନାଆକର ଆଖି ଲୁହ ଛଳ ଛଳ ହୋଇ-ଆସିଲା । ସେ ଲଥ୍ କରି ବସି ପଡ଼ିଲା । ଅତି କରୁଣ ସ୍ୱରରେ କହିଲା—"ଶେଠ ସାହେବ ! ନିରାଶ କରନ୍ତୁ ନାହିଁ । ପିଲାଟାଏ—ଦୟା ନ କଲେ ବଞ୍ଚି ପାରିବନି···।"

ଭଜ ନାଆକର କଥାର ଶେଷ ଅକ୍ଷର ତଣ୍ଟି ପାଖରେ ଅଟକି ଗଲା । କଣ୍ଠ ସ୍ୱର ଗଣଗଣିଆ ଶୁଣାଗଲା । କେବଳ ହାତ ମଳି ମଳି ଅସ୍ପଷ୍ଟ ସ୍ୱରରେ ସେ ଗୁହାରି କରି କଣ କହିବାକୁ ଲାଗିଲା ।

ସିହ୍ନାସାହେବ ଗଦିରୁ ଉଠିଲେ । ଭଜ ନାଆକ ଆଡ଼କୁ ଗୋଟାଏ ଘୃଣାର ଚାହାଣୀରେ ଚାହିଁ କହିଲେ—"ମାତ୍ର ଟଙ୍କା ଶହେ-ଟାଏ । କେଉଁଠୁ ଯୋଗାଡ଼ କରି ଚଳେଇ ଦେ । ଲକ୍ଷେ, ଦୁଇଲକ୍ଷ ତ' ନୁହେଁ । ଶହେଟା ଟଙ୍କା କଣ ଯୋଗାଡ଼ କରି ପାରୁନୁ ? ଯା— କେଉଁଠୁ ଯୋଗାଡ଼ କରି କାମ ଚଳେଇ ନେ— ପରେ ଦେଖିବା ।"

ସିହ୍ନାସାହେବ କବାଟ ବନ୍ଦକରି ତରତରହୋଇ ଘର ଭିତରକୁ ଚାଲିଗଲେ । ଭଜ ନାଆକ ଚିତ୍କାର କରି ଉଠିଲା—"ଶେଠ ସାହେବ ! ମୁଁ ଗରିବ ଲୋକ, ଶହେଟଙ୍କା ମତେ କିଏ ଦବ ?"

ଭଜ ନାଆକର କଥା ଶୁଣିବାକୁ ସିହ୍ନାସାହେବ ଆଉ ସେଠାରେ ନ ଥିଲେ । ଗ୍ୟାରେଜରୁ ଗାଡ଼ି ଷ୍ଟାର୍ଟ ଦେବାର ଶବ୍ଦ ଶୁଭିଲା । ଦରଓ୍ୱାନ ଗେଟ୍ ଖୋଲି ସଲାମ ଦେଲା । ଗାଡ଼ିରେ ଚାଲିଗଲେ ସିହ୍ନାସାହେବ । ଆଉ ଭଜ ନାଆକ······???

+ + +

ଭଜ ନାଆକ ସିହ୍ନାସାହେବଙ୍କର ଘର ଛାଡ଼ିବାର ଆଠବର୍ଷ ହୋଇଗଲାଣି । ସିହ୍ନା ସାହେବ ତା ଜୀବନ ଇତିହାସ ରଖି ନାହାନ୍ତି । ତେବେ କେହି କେହି କହନ୍ତି—ଭଜ ନାଆକ ଭିକ୍ଷା କରୁଛି । ଦରଓ୍ୱାନ କହୁଥିଲା - ଭଜ ନାଆକ ମଣିଷ ମାରି ଜେଲ୍‌ରେ ଅଛି । ଡ୍ରାଇଭର କହୁଥିଲା ଭଜ ନାଆକ ପାଗଳା ହୋଇ କଲିକତାରେ ବୁଲୁଛି । ମୁନିମ କହୁଥିଲା—ଭଜ ନାଆକ ଭିକ ମାଗୁଛି । ମୋଟ ଉପରେ ସିହ୍ନା ସାହେବ ଧରିନେଇଛନ୍ତି—ଗୁରୁବାରେ ଟଙ୍କା ଯିଏ ମାଗେ ତା ଉପରେ ଲକ୍ଷ୍ମୀ ରାଗନ୍ତି—ତେଣୁ ଭଜ ନାଆକ ହତଲକ୍ଷ୍ମୀଟାଏ ।

ଭଜ ନାଆକ ଯିବା ପରେ ବହୁ ଗୁରୁବାର ଆସିଛି, ଯାଇଛି । କାଁଳେ କେଉଁବେଳ ଭଜ ନାଆକ ଆସି ସିହ୍ନା ସାହେବଙ୍କର ସିନ୍ଦୂକ ବାକ୍ସ ଖୋଲ ଟଙ୍କା ନେଇଯିବ—ଏଇ ଡରେ, ସେ ସବୁ ଟଙ୍କା ଏବେ ବ୍ୟାଙ୍କ୍‌ରେ ରଖି ଦେଇ ଆସନ୍ତି । ଆଜର ଟଙ୍କା କାଲ ଦନ ଦଶଟାରେ ବ୍ୟାଙ୍କ୍‌କୁ ଗ୍ଳଲଯାଏ ।

ସିହ୍ନା ସାହେବଙ୍କର ପୁଅ ସୋମନାଥକୁ ଦଶଦନ ହେବ ଖ୍ୟଷଣ ଜର । ପିଲାଟାର ବୟସ ଏଗାର ବର୍ଷ ମାତ୍ର । ଭଜ ନାଆକ ଗ୍ଳକସ ଗ୍ଛଡ଼ବା ବେଳକୁ ସୋମନାଥର ବୟସ ମାତ୍ର ତନ ବର୍ଷ ହୋଇଥିଲ । ସୋମନାଥକୁ ଡାକ୍ତର ପସ୍କଷା କସ୍ଯାଇଛି । ଔଷଧ ଦଆ ଯାଇଛି । ଜର କନ୍ତୁ ବଢ଼ି ଗ୍ଳଲଛି । ଧୀରେ ଧୀରେ ତା'ର ଅବସ୍ଥା ଖସ୍ପ ହୋଇ ଆସିଲ । ଗ୍ଛତର ହାଡ ଗୋଟି ଗୋଟି ହୋଇ ପଦାକୁ ଦେଖାଗଲ । ହାତ ଗୋଡ଼ ତାଙ୍ଗ ପର ହୋଇ ଆସିଲ । ଆଖି ଭିତରକୁ ପଶିଗଲ । ଭୟଙ୍କର ହୋଇ ଉଠିଲ ସୋମନାଥର ଅବସ୍ଥା । ବହୁ ବଡ଼ ବଡ଼ ଡ଼ାକ୍ତର ପସ୍କଷା କର ଠିକ୍ ଭାବେ ରୋଗଟା କ'ଣ ଜାଣିପାର ନାହାନ୍ତି । ସିହ୍ନା ସାହେବ ପାଣି ସୁଅ ପର ପଇସା ଉଡ଼େଇଛନ୍ତି । କେତେ ଦଅଁ ଦେବତାଙ୍କ ପାଖରେ ଭୋଗ ଲଗେଇଛନ୍ତି—ସୁନା ଚଢା ଦେଇଛନ୍ତି । ପୁଅର ଅବସ୍ଥା ଦେଖି ବଚଳତ ହୋଇ ପଡ଼ିଛନ୍ତି ସିହ୍ନା ସାହେବ । ସୋମନାଥର ରୋଗୀଣା ମୁହଁକୁ ଗ୍ଳହିଁଲେ ଆପେ ଆପେ ତାଙ୍କର ଆଖି ଓଦା ହୋଇଆସେ । ଜଣେ ଡାକ୍ତରର ମତାମତ ସହତ ଅନ୍ୟ ଡ଼ାକ୍ତରଙ୍କ ମତ ମିଳୁ ନାହିଁ । ସେ ଗ୍ଳହାନ୍ତି ଯେତେ ପଇସା ଯିଏ ନେଉ ବରଂ; କନ୍ତୁ ସୋମନାଥ ଭଲ ହେଉ ।

ସେ ଦନ ଗୁରୁବାର ।

ସିହ୍ନା ସାହେବଙ୍କୁ ମୁନବ୍ ଖବର ଦେଲ ଯେ—ଜଣେ ବାବାଜୀ ଆସିଛନ୍ତି; ସେ ସୋମନାଥକୁ ନିଶ୍ଚୟ ଭଲ କର ଦେବା କଥା କହୁଛନ୍ତି ।

ସାଧୁ ମହାରାଜାଙ୍କୁ ଦର୍ଶନ କରିବା ପାଇଁ ସିହ୍ନା ସାହେବ ତର ତର ହୋଇ ଗାଡ଼ିକୁ ଆସିଲେ । ଆଗରେ ବସିଛନ୍ତି ଜଣେ ବାବାଜୀ ।

ସିହ୍ନା ସାହେବ ପ୍ରଣାମ କରି ନିଜର ଦୁଃଖ ଜଣାଇଲେ । ବାବାଜୀ ଅଳ୍ପ ହସିଲେ; ଧୀରେ ଧୀରେ କହିଲେ—"ପୁଅକୁ ଭଲ କରିଦେବ ବାବୁ ! ମାତ୍ର ଟଙ୍କା ଶହେଟି ଦରକାର । ବର୍ତ୍ତମାନ ତାହା ଦେବାକୁ ପଡ଼ିବ ।"

ଶହେ ଟଙ୍କା ! ଆଜି ପୁଣି ଗୁରୁବାର ! ଚମକି ପଡ଼ିଲେ ସିହ୍ନା ସାହେବ । ଗୁରୁବାରରେ ଟଙ୍କା ଦେବେ ? ଅତି ତୀକ୍ଷ୍ଣ ଦୃଷ୍ଟିରେ ବାବାଜୀଙ୍କୁ ଚାହିଁଲେ ସେ । ବାବାଜୀ ଅଳ୍ପ ହସି କହିଲେ—"କଣ ହେଲା ବାବା ? ଟଙ୍କା ଦେବାକୁ କୁଣ୍ଠିତ ହେଉଛୁ ?"

ସିହ୍ନା ସାହେବ ଥରି ଉଠିଲେ । ମୁହଁରେ ଆବେଗର ଚିହ୍ନ । ଅତି ହତାଶ ଭାବେ କହିଲେ—"ଆଜି ଦେବି ? ଶହେ ଟଙ୍କା ଦରକାର ? ପୁଅ ଭଲ ହୋଇଯିବ ତ ?"

ବାବାଜୀ କହିଲେ—"ସନ୍ଦେହ କାହିଁକି କରୁଛୁ ବାବା ? ଶିବଙ୍କର ଦୟାହେବ—ତୋ ପୁଅ ଭଲ ହୋଇ ଯିବ ।"

ଗୁରୁବାର । ସିହ୍ନା ସାହେବ ଟଙ୍କା ବାକସ୍ ଖୋଲିଲେ । ଶହେ ଟଙ୍କା ଗଣିଦେଲେ ବାବାଜୀଙ୍କ ହାତରେ । ବାବାଜୀ ଟଙ୍କାକୁ ମୁଠାରେ ଧରି ହୋ...ହୋ...ହୋଇ ହସି ଉଠି କହିଲେ—"ଶେଠ୍ ସାହେବ ! ଏ ଟଙ୍କା ନେ—ଡାକ୍ତରକୁ ଦେଇଦବୁ—ତୋ ପୁଅକୁ ରକ୍ତ ଦେବେ ସେ । ତୋ ଗୁରୁବାରିଆ ଟଙ୍କା ତୁ ନେରେ ବାବୁ ।" ଟଙ୍କାକୁ ସିହ୍ନାସାହେବଙ୍କ ଆଗରେ ଥୋଇଦେଇ ବାବାଜୀ ଗମ୍ଭୀର ହୋଇ ପଦାକୁ ଗୋଡ଼ କାଢ଼ିଲେ ।

ସିହ୍ନା ସାହେବ ଟଙ୍କାକୁ ଚାହିଁଲେ । ଥରି ଉଠିଲା ସାରା ଅଙ୍ଗ । ସେ ଟଙ୍କା ଭିତରେ ସେ ଦେଖିବାକୁ ପାଇଲେ—ଭଜା ନାଆକର କରୁଣ ଆବେଦନ- ସେ ଟଙ୍କାର ପ୍ରତି ଅଣୁ ରୁ ସିହ୍ନାସାହେବ ଶୁଣିବାକୁ ପାଇଲେ ଅତୀତର ଏକ କରୁଣ ପ୍ରତିଧ୍ୱନି—ଦିଅ ଶେଠ୍‌ଜୀ ! ନହେଲେ ପୁଅ ମରିଯିବ' ।

ବାବାଜୀର ଛଦ୍ମ ଆବରଣ ତଳେ, ନିଶବାଡିର ଧାର୍ମିକ ସଜ୍ଜିକରଣ ଭିତରେ—ଭଜ ନାଆକର ସେହି ଅସହାୟ ବ୍ୟକ୍ତିଟି, ଆଜ କଣ ଦିଗନ୍ତର କେଉଁ ଏକ ଚଳ ଚଞ୍ଚଳ ସ୍ରୋତରେ ନିଜକୁ ହଜାଇ ଦେଇ, ପୁଣି ଫେରି ଆସିଥିଲା ସିହ୍ନା ସାହେବଙ୍କର ଦୁର୍ବାର କାମନା ମୂଳରେ ଆଘାତ ଦେଇ ତାକୁ ଛିନ୍ ଭିନ୍ କରି ଟୁକୁଡ଼ା ଟୁକୁଡ଼ା କରି ଦେବାପାଇଁ ? "ଶିବଙ୍କ ଦୟାରୁ ତୋ ପୁଅ ଭଲ ହୋଇଯିବ"—ବାବାଜୀଙ୍କର କଥାକୁ ମନେପକାଉ ଥିଲେ ସେ । କଣ୍ଠର ସ୍ୱର ଠିକ୍ ଅତୀତର ସେହି ଅସହାୟ ଭଜ ନାଆକର ଦରଦ ଭରା ମରମ ତରଳା ସ୍ୱରପରି । ସିହ୍ନାସାହେବ ଚଞ୍ଚଳ ଗତିରେ ଫାଟକ ପାଖକୁ ଧାଇଁଗଲେ ।

ଫାଟକ ଅତିକ୍ରମ କରି ରାଜରାସ୍ତା ଉପରେ ବାବାଜୀ ଆଗେଇ ଯାଉଛନ୍ତି ଆଗକୁ...ଆଗକୁ । ସିହ୍ନା ସାହେବଙ୍କ ଆଖିର ଖୁବ୍ ଦୂରକୁ ଚାଲିଗଲେ ସେ । କାମନା ବାସନାର ସୀମିତ ଗଣ୍ଡି ଭିତରୁ ମୁକ୍ତ ଚେତନା ସତେକି ଚାଲି ଯାଉଛି ନୂତନ ଦିଗନ୍ତର ମଧୁ ମଖା ଆଲୋକକୁ ଆହ୍ୱାନ ଜଣାଇ—ସୁନ୍ଦର ପୃଥିବୀକୁ ମଙ୍ଗଳର ସନ୍ଧାନ ଦେବାପାଇଁ ।

ଆଖିର ଲୁହ ପୋଛୁଥିଲେ ସିହ୍ନା ସାହେବ ।



# ପରମ୍ପରାର ଅଭିଲେଖ

ବହ୍ନମ ନଗର ରାଜପ୍ରାସାଦର ସିଂହଦ୍ୱାରର ଠିକ୍ ସମ୍ମୁଖରେ ଥିବା ସେହି ମାର୍ବଲ ପ୍ରସ୍ତରର ଏକ ଖମ୍ବ ଦେହରେ ଲେଖାଥିଲା—"ପଣ୍ଡିତ ସୁଘୋଷଙ୍କର ଅମର କୀର୍ତ୍ତି ଉଦ୍ଦେଶ୍ୟରେ ।" ଏହି ଲେଖାର କିଞ୍ଚିତ୍ ତଳେ ଆଉ କେତୋଟି ଧାଡ଼ି ଲେଖାଥିଲା । ସେହି ଧାଡ଼ିର ଅକ୍ଷର ମଧ୍ୟରୁ ଯଦିଓ କେତେକ ଅସ୍ପଷ୍ଟ ହୋଇ ଉଠିଥିଲା ତଥାପି ତାକୁ ଏକାନ୍ତ ଭାବରେ ଖୁବ୍ ନିରୀକ୍ଷଣ କରି ପଢ଼ିବାରୁ ଲେଖା ହୋଇଥିବା ବିଷୟ ଯାହା ଜଣାଗଲା ତାହା ହେଉଛି—

"ଢାଉଁ ଢାଉଁ କରି ଢୋଲ କେହି କହେ ନାହିଁ—
ଶୁଭ ଚିନ୍ତା କରୁଅଛି ମୁହିଁ ତୁମ ପାଇଁ,
ଦେଶ ଭକ୍ତ—ମଣିଷର ଅସୀମ ସାଧନା
ତୋଷାମଦ ବାକ୍ୟେ ତାହା ପ୍ରକାଶ ହୁଏନା ।"

କିଛି ସମୟ ଏହି ଲେଖାକୁ ନିରୀକ୍ଷଣ କରି ପଡ଼ୁ ପଡ଼ୁ ଅନ୍ୟମନସ୍କ ହୋଇଯିବାକୁ ପଡ଼ିଲା । ମ୍ଳାନ ସୂର୍ଯ୍ୟ ସେତେବେଳେ ପଶ୍ଚିମ ଆକାଶର ଟିକ୍ ତଳକୁ ଗୁଲିଯାଉଥିଲେ । କିଚିରିମିଚିରି କରି ଗୁଡ଼ାଏ ଚଢ଼େଇ ନିଜ ନିଜ ସ୍ଥାନକୁ ଫେରି ଆସୁଥିଲେ । ଧୀରେ ଧୀରେ ସୂର୍ଯ୍ୟ ପଶ୍ଚିମରେ ହଜିଗଲେ । ଏହି ମାର୍ବଲ ଖମ୍ବ ପାଖରେ ଠିଆହୋଇ ସନ୍ଧ୍ୟାକୁ ଉପଭୋଗ କରିବା ପାଇଁ ଖୁବ୍ ଇଚ୍ଛା ହେଲା । ଧବଳିମା ପୃଥିବୀର ପ୍ରତ୍ୟେକ ବସ୍ତୁରେ କେହି କଳା ବୋଳି ବୋଳି ତାକୁ ଅନ୍ଧକାରରେ ଲୁଚାଇ ଦେବା ପାଇଁ ଚେଷ୍ଟା କରୁଥିବା ପରି ଗୁରିଆଡ଼ ଅସ୍ପଷ୍ଟ ହୋଇ, ତାପରେ ଧୀରେ ଧୀରେ ଆଖିକୁ ଆଉ ଦେଖାଗଲା ନାହିଁ । ଦୂରରୁ କେହି ଜଣେ ମିଞ୍ଜି ମିଞ୍ଜି ହୋଇ ଜଳୁଥିବା ଏକ ଆଲୁଅ ଧରି ଆସିବା ପରି ଜଣା ପଡ଼ିଲା । କିଛିକ୍ଷଣ ପରେ ଜଣେ ବୁଢ଼ା ଖମ୍ବ ନିକଟକୁ ଆସି

ଖମ୍ବର ପାଦ ଦେଶରେ ବନ୍ତିଟିକୁ ଥୋଇ ବେକରେ ନିଜ ପରିଧାନ ଶାର୍ଢ଼ି କାନିକୁ ଗୁଡ଼ାଇ ଖମ୍ବ ମୂଳରେ ହାତ ଯୋଡ଼ି ପ୍ରଣାମ ଜଣାଇ ତଳୁ ଧୂଳି ଆଣି, ମୁଣ୍ଡରେ ବୋଳି ଠିଆ ହେଲେ ।

—"ମାଆ !"

ଡାକ ଶୁଣି ବୁଢ଼ୀ ଚମକି ପଡ଼ିଲେ । ତାପରେ ଆଗକୁ ଚାହିଁ ପଚାରିଲେ—"କିଏ ବାବୁ ?"

—"ତୁମେ କଣ ଏ ମାଙ୍ଗଳ ଖମ୍ବ ମୂଳରେ ସଞ୍ଜବତି ଦେବାପାଇଁ ଆସିଥିଲ ?"

—"ହଁ ବାବା ! ତୁମେ କିଏ ?"

—"ମୁଁ ହେଉଛି ବର୍ତ୍ତମାନର ସଭ୍ୟତା । ଅତୀତକୁ ଖୋଜିବା ପାଇଁ ଏଠାକୁ ଆସିଛି । ତୁମେ କିଏ ମାଆ ? ଏ ଖମ୍ବମୂଳରେ କାହିଁକି ଏବଂ କାହା ଉଦ୍ଦେଶ୍ୟରେ ସଞ୍ଜବତି ଜାଳିବାକୁ ଆସିଛ ?"

—"ମୁଁ ହେଉଛି ପରମ୍ପରା ବାବା । ଯୁଗ ଯୁଗ ଧରି ମୁଁ ଏହିପରି ଅତୀତକୁ ସ୍ମରଣ କରି ଆସିଛି । ଯାହା ଉଦ୍ଦେଶ୍ୟରେ ଏ ବତି ଜାଳୁଛି ତାର ଇତିହାସ ବର୍ତ୍ତମାନର ଇତିହାସ ନୁହେଁ । ସେ ହେଉଛି ଅତୀତର ଏକ ଅଲିଭା ସ୍ୱାକ୍ଷର । ସେ ସ୍ୱାକ୍ଷରର ସମସ୍ତ ଅକ୍ଷରକୁ ମୁଁ ଗୋଟି ଗୋଟି କରି ପଢ଼ିଛି—ମୁଁ ତାର ମହତ୍ତ୍ୱ ଜାଣେ ବାବା ।"

—"କିନ୍ତୁ ମୁଁ ଜାଣିବାକୁ ଚାହେଁ । ସେହି ମହତ୍ତ୍ୱ ଉପରେ ମୁଁ ମୋ ଦେହରୁ ଜନ୍ମ କରି ଆଗାମୀ ସଭ୍ୟତାକୁ ଠିଆ କରାଇ ଦେଇ ଯିବି । ଅତୀତର ସେହି ଅକ୍ଷରକୁ ମୁଁ ପଢ଼ିବା ପାଇଁ ଚାହେଁ ।"

—"ବେଶ୍ ! ତା ହେଲେ ପଢ଼ିନିଅ । ରାତିର ଏଇ ଅନ୍ଧକାର ଭିତରେ ତୁମେ ଚେଷ୍ଟା କଲେ ସେ ଅକ୍ଷର ସବୁକୁ ବେଶ୍ ପଢ଼ି ପାରିବ । ଯେଉଁଠାରେ ତୁମେ ନିଜକୁ ଅସହାୟ ମଣିବ ସେଠାରେ ତୁମେ ମୋ ବତି ଆଲୋକର ସାହାଯ୍ୟ ନେଇ ପାର । ଏଇ ନିଅ—ଅତୀତର ସେହି କାହାଣୀର ସମସ୍ତ ବିଷୟ । ବର୍ତ୍ତମାନ ପଢ଼ିବାକୁ ଚେଷ୍ଟାକର ତୁମେ ।"

ବୃଦ୍ଧା ମୋ ସମ୍ମୁଖରେ ଏକ ପୁରାତନ ଫଳକ ଥୋଇଦେଲେ । ଯଦିଓ ପଢ଼ିଲାବେଳେ ଆଖିକୁ କଷ୍ଟ ଲାଗୁଥିଲା ତଥାପି ସମସ୍ତ ପଢ଼ି ଶେଷକରି ଦେଇ, ନିଜ ସଭ୍ୟତାର ଇତିହାସରେ ତାକୁ ଲେଖିବାକୁ ପ୍ରୟାସ କରି ଲେଖା ଆରମ୍ଭ କଲି କେବଳ ଆପଣମାନେ ତାହା ପଢ଼ି ସେ ବିଷୟ ଜାଣିବା ପାଇଁ । ଅନୁରୋଧ କରିବି – ଆପଣ ବର୍ତ୍ତମାନ ମୋ ପରି କଷ୍ଟ ସ୍ୱୀକାର କରି ଲିପିବଦ୍ଧ ସେହି ବିକ୍ରମ ନଗର ରାଜବଂଶର ଏକ ଅଧ୍ୟାୟ ପଢ଼ି ନିଅନ୍ତୁ ଏବଂ ପରମ୍ପରା ସହିତ ଭବିଷ୍ୟତର ଯୋଗସୂତ୍ର ରକ୍ଷାରେ ସାହାଯ୍ୟ କରନ୍ତୁ । ସେ ଇତିହାସ ତଳେ ଲେଖାଯାଇଛି । ପଢ଼ନ୍ତୁ ଏଥର—

ସେ ଥିଲେ ବିକ୍ରମ ନଗରର ଜଣେ ରାଜା । ବିକ୍ରମ ନଗର ତତ୍କାଳରେ ଏକ ସାମାନ୍ୟ ରାଜ୍ୟ ନଥିଲା । ଅଳ୍ପକେତେକ ଶ୍ରେଷ୍ଠରାଜ୍ୟ ମଧ୍ୟରେ ବିକ୍ରମ ନଗରର ମଧ୍ୟ ସ୍ଥାନ ଓ ସମାନ ଥିଲା । ବହୁରାଜା ରାଜପଣ କରି ଯାଇଥିଲେ; କିନ୍ତୁ ଏ ମାର୍ବଲ ଖମ୍ବ ଓ ପଣ୍ଡିତ ସୁବୋଧଙ୍କ ବିଷୟରେ ଜାଣିବାର ଇଚ୍ଛା ଅଧିକ ହେବାରୁ ସେ ବିଷୟରେ ରାଜା ସୁରସେନଙ୍କୁ ଆପଣ ପ୍ରଥମେ ଚିନ୍ତାକରି ଦେଖି ନିଅନ୍ତୁ ।

ବର୍ତ୍ତମାନ ବୁଝିଲେତ ? ସେତେବେଳେ ବିକ୍ରମ ନଗରର ରାଜା ଥିଲେ ସୁରସେନ । ଅପଦାର୍ଥ, ଭୀରୁ, ତୋଷାମୋଦ ପ୍ରିୟ ସୁରସେନଙ୍କ ରାଜ୍ୟ ଶାସନର ପ୍ରଥମ ଭାଗରେ ବିକ୍ରମ ନଗରର ସମସ୍ତ ଗୌରବ ନଷ୍ଟ ହୋଇ ଆସିଥିଲା । ତଥାପି ରାଜାଙ୍କର ଅହଂକାର ଦେଖିଲେ ନିଶ୍ଚୟ ଯେ କେହି ପଣ୍ଡିତ ମନେ ମନେ ଉପହାସ ଓ ବିଦ୍ରୂପ କରି ପାରନ୍ତି ।

ଆଳସ୍ୟପରାୟଣ ରାଜା କେବଳ ତୋଷାମଦକାରୀଙ୍କ ଗହଣରେ ବସି ସେମାନଙ୍କର ଅଯଥା ମିଠା କଥା ଶୁଣି ଆନନ୍ଦ ପ୍ରମୋଦରେ ଦିନ ବିତାଉଥିଲେ । ଯେଉଁମାନେ ତୋଷାମଦ କରିପାରୁଥିଲେ ସେମାନେ ରାଜାଙ୍କର ଅତି ପ୍ରିୟ ପାତ୍ର ହୋଇ ଅଧିକ ପାରିତୋଷିକ ପାଉଥିଲେ । ରାଜାଙ୍କର ଏପରି ମତିଗତିକୁ ଲକ୍ଷ୍ୟକରି ପାତ୍ର ମନ୍ତ୍ରୀ ସେନାପତି ଓ ରାଜକର୍ମଚାରୀବୃନ୍ଦ କୌଣସି କାର୍ଯ୍ୟ ନକରି କେବଳ ରାଜାଙ୍କର ସ୍ତବଗାନ କରି ରାଜାଙ୍କୁ ଧନ୍ୟ ଧନ୍ୟ କହି, ତାଙ୍କର ବାହାବା କରି, ତାଙ୍କ ନିକଟରେ

ଉପସ୍ଥିତ ହୋଇ ମନେ ମନେ ସନ୍ତୋଷଲାଭ କରୁଥିଲେ । ଫଳରେ ଏହି ଚାଟୁକାରଗଣ ରାଜଅନୁଗ୍ରହ ଲାଭକରି ଚାଲି ଯାଉଥିଲେ । ରାଜ୍ୟର ସୈନ୍ୟସାମନ୍ତ ଓ ସେନାପତି ଇତ୍ୟାଦି ଧୀରେ ଧୀରେ ଯୁଦ୍ଧ କୌଶଳ ଭୁଲି ଯାଇଥିଲେ । ତେଣୁ ସେମାନେ ଶତ୍ରୁ ସହିତ ଯୁଦ୍ଧ କରିବାକୁ ଡ଼ରୁ ଥିଲେ । ଯୁଦ୍ଧ ସମସ୍ୟା ଉପୁଜିଲେ ସେନାପତି ରାଜାଙ୍କୁ କହୁଥିଲେ— "ମହିମାଙ୍କ ପରି ବୀର ଏ ପୃଥିବୀରେ ଆଉ କେହି ନାହିଁ । ବିନା ଯୁଦ୍ଧରେ କେବଳ ମହିମା ଗର୍ଜିଦେଲେ ଶତ୍ରୁମାନେ ଯେ ଯୁଆଡ଼େ ଛିନ୍ନଛତ୍ର ହୋଇ ପଳାଇ ଯିବେ ।" ଏ ସବୁର ସୁଯୋଗ ନେଇ ରାଜ୍ୟର ବହୁ ଅଞ୍ଚଳ ବାହାର ଶତ୍ରୁରାଜ୍ୟମାନେ ଅକ୍ଳେଶରେ ନିଜ ନିଜର ଦଖଲକୁ ନେଇ ଯାଉଥିଲେ । ରାଜ୍ୟର ଅଂଶ ଶତ୍ରୁମାନେ ଦଖଲ କରୁଥିବା ସମ୍ବାଦ ପାଇ, ରାଜା ଯେତେବେଳେ ଏ ସଂପର୍କରେ ସେନାପତିଙ୍କର ପରାମର୍ଶ ଲୋଡ଼ୁଥିଲେ ସେତେବେଳେ ସେନାପତି କହୁଥିଲେ—"ମହିମା ଇଚ୍ଛା କଲେ ଗୋଟିଏ ମୁହୂର୍ତ୍ତରେ ସବୁ ଅପହୃତ ଅଞ୍ଚଳ ପୁଣି ଫେରି ଆସିବ । ଶତ୍ରୁମାନେ ଯେଉଁ ଅଞ୍ଚଳ ଦଖଲ କରି ବସିଛନ୍ତି ସେଥିପାଇଁ ଆମର ଚିନ୍ତା କରିବାର ନାହିଁ । କାରଣ ଶତ୍ରୁମାନେ ମହିମାଙ୍କର ବୀରତ୍ୱ ବିଷୟରେ ଆଦୌ ଜାଣି ନାହାନ୍ତି । ସେମାନେ ଯେତେବେଳେ ପ୍ରଭୁଙ୍କର ବୀରତ୍ୱ ଓ ଗୌରବ ବିଷୟରେ ଅବଗତ ହେବେ, ସେତେବେଳେ ସେମାନେ ଭୟରେ ବଳେ ବଳେ ଦଖଲ କରି ଭୋଗକରୁଥିବା ଆମ ରାଜ୍ୟର ଅଂଶ ସବୁକୁ ନିଶ୍ଚୟ ଛାଡ଼ି ଚାଲିଯିବେ ।" ପ୍ରଭୁଙ୍କ ପରି ବୀର ଏଥିରେ ବିବ୍ରତ ହେବା ଉଚିତ ନୁହେଁ ।

ରାଜା ଏପରି ଚାଟୁ କଥାରେ ଭୁଲିଯାଇ, ନିଜ ବୀରତ୍ୱର ପ୍ରଶଂସା ଶୁଣି ଆତ୍ମତୃପ୍ତି ଲାଭ କରୁଥିଲେ ।

ସବୁଠାରୁ ମାରାତ୍ମକ ବ୍ୟାପାର ହେଲା—ରାଜାଙ୍କର ଉପଦେଷ୍ଟା ଭାବେ ଯେଉଁ ପଣ୍ଡିତ ମଣ୍ଡଳୀ ଥିଲେ ସେମାନଙ୍କ ମଧ୍ୟରେ ଅଧିକାଂଶ ମଧ୍ୟ ରାଜାଙ୍କୁ ତୋଷାମୋଦ କରିବାକୁ ଆରମ୍ଭ କରିଦେଲେ; କିନ୍ତୁ ଏହି ପଣ୍ଡିତଙ୍କ ଭିତରେ 'ପଣ୍ଡିତ ସୁବୋଧ' ଥିଲେ ଏକ ବ୍ୟତିକ୍ରମ । ସେ ବଡ଼ ସ୍ପଷ୍ଟବାଦୀ, ନିର୍ଭିକଥିଲେ ଏବଂ ନୀଚ ତୋଷାମୋଦକୁ ଘୃଣା କରୁଥିଲେ ।

ରାଜାଙ୍କର ଅଜ୍ଞତାକୁ ଲକ୍ଷ୍ୟକରି, ଆବଶ୍ୟକ ପଡ଼ିଲେ ସେ ଅତି ରୁକ୍ଷ ଭାଷାରେ ଯାହା ସତ୍ୟ ଓ ଯାହା କରଣୀୟ ତାହା ରାଜସଭାରେ ଉପସ୍ଥାପନ କରୁଥିଲେ । ତାଙ୍କର କଥା ଗୁଡ଼ାକ ବିଷାକ୍ତ ତୀର ପରି ରାଜାଙ୍କ ମର୍ମସ୍ଥଳ ବିଦ୍ଧ କରୁଥିଲା । ତେଣୁ ରାଜା ସୁଘୋଷଙ୍କ ପ୍ରତି ବିରକ୍ତ ହେବାକୁ ଲାଗିଲେ । ସୁଯୋଗ ଉଣ୍ଡି ତୋଷାମୋଦକାରୀ ପଣ୍ଡିତମାନଙ୍କ ଦ୍ୱାରା ସୁଘୋଷଙ୍କୁ ଅପମାନିତ କରିବା ପାଇଁ ଲାଗିପଡ଼ିଲେ । ଦରବାରର ସମସ୍ତଙ୍କ ନିକଟରେ ସୁଘୋଷଙ୍କର ମର୍ଯ୍ୟାଦା କମେଇ ଦେବାର ବ୍ୟବସ୍ଥା କରି ଦିଆଗଲା । ତାଙ୍କ ମାସିକ ପାରିତୋଷିକରୁ ପ୍ରତିମାସରେ କିଛି କିଛି କମେଇ ଦିଆଗଲା । ଫଳରେ ଗୋଟିଏ ଗୋଟିଏ ମାସରେ ପଣ୍ଡିତେ ମାତ୍ର ଦୁଇ ତିନି ଟଙ୍କା ( ବର୍ତ୍ତମାନର ମୁଦ୍ରା ଅନୁଯାୟୀ ) ପାରିତୋଷିକ ପାଇଲେ । ଆର୍ଥିକ ଅବନତି ପଣ୍ଡିତଙ୍କର ସାମାଜିକ ସମ୍ମାନ ଉପରେ ପ୍ରଭାବ ପକାଇଲା । ଫଳରେ ବହୁ କ୍ଷେତ୍ରରେ ତାଙ୍କର ସମ୍ମାନରେ ଆଞ୍ଚ ଆସିଲା । ବହୁଥର ଅପମାନିତ ହେବାକୁ ପଡ଼ିଲା । ପାରିବାରିକ ଶାନ୍ତି ଧୀରେ ଧୀରେ ଅଶାନ୍ତ ହୋଇ ଉଠିଲା । ପୂର୍ବର ପଣ୍ଡିତ ସୁଘୋଷ ଏକ ଦରିଦ୍ରତମ ଅସମ୍ମାନିତ ବ୍ୟକ୍ତିଭାବେ ପରିଗଣିତ ହେଲେ । ନିଜ ପରିବାରରେ ତାଙ୍କର ଯେଉଁ ଆଧିପତ୍ୟ ଥିଲା ତାହା ମ୍ଳାନ ହୋଇ ଆସିଲା । ପଣ୍ଡିତ ସୁଘୋଷ ବର୍ତ୍ତମାନ ଦରିଦ୍ର ସୁଘୋଷର ଆଖ୍ୟା ନେଲେ । ପାଣ୍ଡିତ୍ୟ ଓ ଦାରିଦ୍ର୍ୟ ମଧ୍ୟରେ ଏପରି ସଂଗ୍ରାମ ଆରମ୍ଭ ହୋଇଗଲା ଯେ, ଯାହା ଫଳରେ କି ପଣ୍ଡିତଙ୍କର ପାଣ୍ଡିତ୍ୟ ବିଷୟରେ ଜନ ସାଧାରଣ ସନ୍ଦେହୀ ହୋଇ ଉଠିଲେ ।

ଅର୍ଥାଭାବରୁ ପଣ୍ଡିତଙ୍କ ପରିବାର ମଧ୍ୟରେ ଝଗଡ଼ାର ସୂଚନା ମିଳିଲା । ପଣ୍ଡିତଙ୍କର ବଡ଼ପୁଅ ଅସହିଷ୍ଣୁ ହୋଇ ଉଠିଲେ । ଅଭାବବୋଧର ଉତ୍କଟତା ହେତୁ ବଡ଼ ପୁଅ ନିଜ ପିତାଙ୍କର ସମସ୍ତ କଥାରେ ପ୍ରତିବାଦ କରିବାକୁ ଆରମ୍ଭ କରିଦେଲେ । ପ୍ରକାଶ୍ୟରେ ନିଜ ପିତାଙ୍କର ପାଣ୍ଡିତ୍ୟକୁ ଧିକ୍କାର କରି ସେ ସମାଲୋଚନା କରିବାକୁ ଛାଡ଼ିଲେ ନାହିଁ ମଧ୍ୟ । ସ୍ତ୍ରୀ ସୁଭଦ୍ରା ପାରିବାରିକ ଅଶାନ୍ତି ଭିତରେ ସନ୍ତୁଳ ହୋଇ ସ୍ୱାମୀଙ୍କ ପ୍ରତି ବିଦ୍ରୋହିଣୀ ହୋଇ ଉଠିଲେ ।

ଦୁଇଦିନ ପଣ୍ଡିତଙ୍କ ଘରେ ଚୁଲି ଅଜଳା ରହିଗଲା । ପଣ୍ଡିତଙ୍କ ସ୍ତ୍ରୀ ବେଗକ୍ଲାନ୍ତ ପିଲାଙ୍କର ଆଖିର ଲୁହ ଦେଖି ଧୈର୍ଯ୍ୟହୀନା ହୋଇପଡ଼ିଲେ । ସେହିଦିନ ପ୍ରଥମ କରି ସେ ନିଜ ସ୍ୱାମୀଙ୍କ ଆଗରେ ଠିଆ ହୋଇ ଲୁହ ଛଳ ଛଳ ଆଖିରେ ଅତି କଠୋର ଓ ରୁକ୍ଷ ଗଳାରେ କହିଲେ—"ତୁମେ ଦେଖୁଛ କି; ଘରର ଅବସ୍ଥା କଣ ହେଲାଣି । ତୁମଠାରୁ ଅତି ନଗଣ୍ୟ ଲୋକମାନେ ରାଜଅନୁଗ୍ରହରୁ ଆଜି କ୍ଷୀରସପୁର ଖାଉଛନ୍ତି; ଆଉ ତୁମ ଅବସ୍ଥା ଏମିତି କାହିଁକି ? ଏପରି ପଣ୍ଡିତ ପଣିଆରେ ଦାମ୍ କଣ ? ରାଜାଙ୍କ ପାଖରେ ସତକୁ ମିଛ, ମିଛକୁ ସତ କରି ଲୋକେ ଆରାମରେ ଚଳିଯାଉଛନ୍ତି । କିନ୍ତୁ ତୁମେ କଣ ଏତେ ଅପାରଗ ? ଯାହାର ଦାନା ଖାଉଛେ ତାକୁ ଟିକେ ଖୋସାମତି କଲେ କ୍ଷତି କଣ ?"

ସ୍ତ୍ରୀ ସୁଭଦ୍ରାଙ୍କ କଥା ଶୁଣି ପଣ୍ଡିତେ ରାଗରେ ପଞ୍ଚମ ହୋଇ କହିଲେ—"ସମସ୍ତେ ବିଷ୍ଠା ଖାଉଛନ୍ତି ବୋଲି ମୁଁ କଣ ବିଷ୍ଠା ଖାଇବାକୁ ଯିବି ? ସମସ୍ତଙ୍କ ପରି ମୁଁ ଯେଉଁଦିନ ତୋଷାମୋଦ କରିବି, ସେ ଦିନ ରାଜ୍ୟ ଉପରେ ଭୟଙ୍କର ବିପଦ ମାଡ଼ି ଆସିବ ? ମୋର ସ୍ପଷ୍ଟବାଦିତା ଫଳରେ ରାଜ୍ୟର କିଛି ମାତ୍ର ଉନ୍ନତି ସମ୍ଭବ ହୋଇଛି—ନ ହେଲେ ସେ ଏ ରାଜ୍ୟର ଅବସ୍ଥା କଣ ହୁଅନ୍ତା ତାହା କଳ୍ପନା କରିହେବ ନାହିଁ ।

ସୁଭଦ୍ରା ଦେବୀ ସୁଘୋଷଙ୍କର କଥାକୁ ବିଦ୍ରୂପରେ ଉଡ଼ାଇ ଦେଇ କହିଲେ—"ତୁମେ ତା ହେଲେ ଏ ରାଜ୍ୟକୁ ମୁଣ୍ଡରେ ମୁଣ୍ଡାଇ ରଖିଛ ! ଧିକ ତୁମର ସ୍ପଷ୍ଟବାଦିତାକୁ ! ଭଲଗଡ଼ି ଅଛିତ, ରାଜାଙ୍କ ମନରଖି ପରିବାର ଚଳାଅ । ନାହିଁତ ସମସ୍ତଙ୍କୁ ବିଷ ଦେଇ ମୋତେ ଏ ଜଞ୍ଜାଳରୁ ନିସ୍ତାର କର ।"

ପଣ୍ଡିତେ ଅତି ଚିନ୍ତିତ ଅବସ୍ଥାରେ କହିଲେ—"ତା ହେଲେ ତୁମେ କଣ କହୁଛ ସବୁ ପଣ୍ଡିତମାନଙ୍କ ପରି ମୁଁ ବି ଅଯଥା ରାଜାଙ୍କୁ ଖୋସାମତି କରି ଠକ ଭଣ୍ଡି ଅର୍ଥ ରୋଜଗାର କରେ ବୋଲି ? ବେଶ୍, ଏହା ଯଦି ତୁମମାନଙ୍କର ମତ, ତେବେ ମୁଁ ଆଜିଠାରୁ ରାଜାଙ୍କୁ ଖୋସାମତି କରି ଧନ ଆଣି ତୁମକୁ ଚଳାଇ ନେବି ।"

ଆତ୍ମଗ୍ଲାନିକୁ ଗୁପ୍ତ ଭିତରେ ଲୁଚିପିରଖି ରାଜଦରବାରକୁ ଯିବାପାଇଁ ପଣ୍ଡିତେ ଘରୁ ବାହାରିଗଲେ । ମନୁଷ୍ୟତ୍ୱ ଓ ପଶୁତ୍ୱ ମଧ୍ୟରେ ଯେଉଁ ବଳ କଷାକଷି ଚାଲିଥିଲା ସେଥିରେ ପଣ୍ଡିତଙ୍କର ଦୃଢ଼ତା କମି ଆସୁଥିଲା । ସେ କଣ ଖୋସାମତ କରିବେ ? ଅଯଥା ପ୍ରଶଂସା କରି ନିଜର ସ୍ୱାର୍ଥପାଇଁ ପାଣ୍ଡିତ୍ୟର ଅମର୍ଯ୍ୟାଦା କରିବେ ? ପେଟ ପାଇଁ, କେବଳ ବଞ୍ଚିରହିବା ପାଇଁ ନିଜର ସମସ୍ତ ମାନବିକ ମୂଲ୍ୟବୋଧକୁ ସେ କଣ ଫିଙ୍ଗିଦେଇ ପାରିବେ ? ··· ମୁଣ୍ଡରେ ବହୁ ପ୍ରଶ୍ନ । ତାଙ୍କର ଯନ୍ତ୍ରଣାବୋଧ ଦ୍ୱିଗୁଣିତ ବେଗରେ ବଢ଼ି ଚାଲିଥାଏ । ଦରବାରର ନିକଟରେ ପହଞ୍ଚିଗଲେ ପଣ୍ଡିତ ସୁଘୋଷ ।

ଚାଟୁକାର ପଣ୍ଡିତ ମଣ୍ଡଳୀ ରାଜା ସୁରସେନଙ୍କ ସମ୍ମୁଖରେ ଘେରି ରହିଥାନ୍ତି । କିଏ ରାଜାଙ୍କର ବୀରତ୍ୱକୁ ପ୍ରଶଂସା କରୁଥାନ୍ତି ତ, କିଏ ରାଜାଙ୍କର ରୂପକୁ ସ୍ୱର୍ଗଦେବତାଙ୍କ ସହିତ ତୁଳନା କରୁଥାନ୍ତି । ଦୂରରୁ ପଣ୍ଡିତ ସୁଘୋଷଙ୍କୁ ଦେଖି ବିଦ୍ରୂପ ସ୍ୱରରେ ରାଜା କହିଲେ—"ଦେଖ ପଣ୍ଡିତଗଣ ! ସୁଘୋଷ ପଣ୍ଡିତ କିପରି ଏକ କାଙ୍ଗାଳ ପରି ଦେଖାଯାଉ-ଛନ୍ତି । ଆଜି ସମ୍ଭବ ପେଟରେ ତାଙ୍କର କିଛି ପଡ଼ି ନଥିବା ପରି ମନେ ହୁଏ । ମୁଁ ଆଜି ତାଙ୍କ ସହିତ ମଜା କରିବି—ତୁମେମାନେ ତାହା ଆନନ୍ଦରେ ଉପଭୋଗ କରିବ ।"

ରାଜାଙ୍କ କଥା ଶୁଣି ପଣ୍ଡିତମାନେ ସୁଘୋଷଙ୍କ ଆଡ଼କୁ ଚାହିଁ ଘୃଣାରେ ସମସ୍ତେ ହସି ଉଠିଲେ । ପଣ୍ଡିତ ସୁଘୋଷ ଦରବାରରେ ପହଞ୍ଚି ରାଜାଙ୍କୁ ଆଶୀର୍ବାଦ କରି, ନିଜ ଆସନ ଗ୍ରହଣ କଲେ । ରାଜା ବିଦ୍ରୂପ କରି କହିଲେ—"ପଣ୍ଡିତେ ! ଆଜି ଆପଣଙ୍କର ଖାଇବା କଣ ହୋଇଥିଲା ?"

ପଣ୍ଡିତେ କହିଲେ—"ଆଜି ମହିମା ଯାହା ଖାଇଛନ୍ତି, ମୁଁ ତାହାହିଁ ଖାଇଆସିଛି ।"

ରାଜା ପଣ୍ଡିତଙ୍କୁ ଅତି ଲଜ୍ଜା ଦେବା ପାଇଁ କହିଲେ—"ଆଜ ଆମର * ସୁରାପାନୀୟ ପ୍ରସ୍ତୁତ ହୋଇଥିଲା ।"

ପଣ୍ଡିତ ସୁଘୋଷ ତତ୍‌କ୍ଷଣାତ କହିଲେ—"ମୁଁ ମଧ୍ୟ ସେହି ପାନୀୟ ଉଦରସ୍ଥ କରି ଆସିଛି । ଏହାର କାରଣ ହେଉଛି—ଯିଏ ମିଛ କଥା କହି ଅନ୍ୟକୁ ବିଦ୍ରୂପ କରେ ଏବଂ ଯିଏ ମିଛ କଥା କହି ଅନ୍ୟର ତୋଷାମୋଦ କରେ ଏ ଉଭୟ ସୁରାପାନ ସହିତ ସମାନ ।"

ଏ କଥା ଶୁଣି, ରାଜା କ୍ରୋଧରେ ନାଲ୍ ହୋଇଗଲେ । ସୁଘୋଷଙ୍କୁ ଏପରି ଔଦ୍ଧତ୍ୟର ଉଚିତ ପ୍ରତିଫଳ ଦେବାପାଇଁ ସେ ମନେ ମନେ ସ୍ଥିର କରିନେଲେ । ପଣ୍ଡିତ ସୁଘୋଷ ମଧ୍ୟ ନିଜର ଏପରି ସ୍ପଷ୍ଟବାଦିତା ପାଇଁ ମନେ ମନେ ପ୍ରମାଦ ଗଣିଲେ । କିଛିକ୍ଷଣ ରାଜା ଗମ୍ଭୀର ଭାବେ ସଭାରେ ଥିବା ପଣ୍ଡିତମଣ୍ଡଳୀକୁ ଚାହିଁ; ତାପରେ ସୁଘୋଷଙ୍କ ଆଡ଼କୁ ମୁହଁ ବୁଲାଇ କହିଲେ—"ତୁମର ଔଦ୍ଧତ୍ୟ ସୀମା ଅତିକ୍ରମ କରି ଗଲାଣି ପଣ୍ଡିତେ । ମୁଁ ଜାଣେ ତୁମର ବୁଦ୍ଧି ଗଧର ବୁଦ୍ଧି ଅପେକ୍ଷା ଆହୁରି କମ୍ । ସର୍ବସାଧାରଣ ତୁମର ବୋକାମିକୁ ଦେଖି ଯେପରି ଉପହାସ କରିବେ ଆଜ ମୁଁ ତହିଁର ବ୍ୟବସ୍ଥା କରିଦେଉଛି । ଶୁଣ ପଣ୍ଡିତ ସୁଘୋଷ ! ଆସନ୍ତାକାଲ ସକାଳେ, ତୁମେ ଯେତେବେଳେ ଦରବାରକୁ ଆସିବ, ସେତେବେଳେ ଏଠାକୁ ଆସିବା ପୂର୍ବରୁ, ମୋ ସିଂହ ଦ୍ୱାର ନିକଟରେ ମୋର ଯେଉଁ ଗଧ ବନ୍ଧା ହୋଇଥିବ, ତୁମେ ସେହି ଗଧର ସମ୍ମୁଖସ୍ଥ ଭୂମିରେ ମୁଣ୍ଡମାଡ଼ି ତାକୁ ପ୍ରଣାମକରି ଏଠାକୁ ଆସିବ । ସମସ୍ତେ ଦେଖିବେ; ତୁମପରି ଅହଂକାରୀ, ଗଧକୁ ମଧ୍ୟ ଦଣ୍ଡବତ କରି ସମ୍ମାନିତ କରେ । ଏହି ଆଦେଶ ଲଙ୍ଘନ କଲେ ତୁମକୁ ଏହାଠାରୁ ଆହୁରି ଅପମାନଜନକ କାର୍ଯ୍ୟରେ ଲଗାଯିବ ।"

ପରଦିନ ପଣ୍ଡିତ ସୁଘୋଷ ନିଜ ସଙ୍ଗରେ ତାଙ୍କର ଗଧଟିକୁ ନେଇ ଆସି, ସିଂହଦ୍ୱାର ନିକଟରେ ଯେଉଁଠାରେ ରାଜାଙ୍କର ଗଧ ବନ୍ଧା

---

* ତତ୍‌କାଳୀନ ସମାଜରେ ସୁରାପାନ ପଣ୍ଡିତମାନଙ୍କ ପକ୍ଷରେ ଦୋଷାବହ ଥିଲା ।

ହୋଇଥିଲା, ତାହାର ନିକଟରେ ବାନ୍ଧି ଦେଇ, ରାଜନଗର ଭିତରକୁ ଯାଇ, ଦରବାରରେ ଉପସ୍ଥିତ ହେଲେ । ରାଜା ପଚାରିଲେ – "କ'ଣ ପଣ୍ଡିତେ ! ଗତ ଦିନର ନିର୍ଦ୍ଦେଶକୁ ଆପଣ ରକ୍ଷା କରିଛନ୍ତି ତ' ?" ପଣ୍ଡିତ ସୁଘୋଷ ହସ ହସ ମୁହଁରେ ଉତ୍ତର ଦେଲେ—"ମୁଁ ଦୁଃଖିତ ମହିମା ! ସିଂହଦ୍ୱାର ନିକଟରେ ଦୁଇଟି ଗଧ ବନ୍ଧା ହୋଇଥିଲା । କେଉଁଟି ଆପଣଙ୍କର; ତାହା ମୋ ପକ୍ଷରେ ଜାଣିବା ଅସମ୍ଭବ ହୋଇ ପଡ଼ିଲା । ତେଣୁ ଗତ ଦିନର ଆଦେଶ ଅନୁଯାୟୀ ମୁଁ କାର୍ଯ୍ୟ କରିପାରି ନାହିଁ । ଦୁଇଟି ଗଧ ମଧ୍ୟରୁ ଆପଣଙ୍କ ଗଧଟି କିଏ; ମୁଁ ଯଦି ଜାଣିପାରିଥାନ୍ତି, ତା ହେଲେ ଆଦେଶ ପାଳନ କରିବା ମୋ ପକ୍ଷରେ ସମ୍ଭବ ହୋଇ ପାରିଥାନ୍ତା । ତେଣୁ ଏ ଅସୁବିଧାକୁ ହୃଦୟଙ୍ଗମ କରି, ନିଜ ଆଦେଶକୁ ଆପଣ ପ୍ରତ୍ୟାହାର କରିନେବେ ବୋଲି ମୁଁ ଆଶା କରେ ।"

ରାଜା ସୁରସେନ, ପଣ୍ଡିତଙ୍କ କଥାର ସତ୍ୟାସତ୍ୟ ପରୀକ୍ଷା କରିବା ପାଇଁ, ଜନୈକ ପ୍ରହରୀକୁ ସିଂହଦ୍ୱାର ନିକଟକୁ ପଠାଇଲେ – ପ୍ରକୃତରେ ଦୁଇଟି ଗଧ ସିଂହଦ୍ୱାର ନିକଟରେ ଅଛନ୍ତି କି ନା ଜାଣିବା ପାଇଁ । ରାଜାଙ୍କ ଆଦେଶ ପାଇବାକ୍ଷଣି ପ୍ରହରୀ ସିଂହଦ୍ୱାର ନିକଟକୁ ଗଲା ଓ ଫେରି ଆସି, ଦୁଇଟି ଗଧଥିବା କଥାର ସତ୍ୟତା ସଂପର୍କରେ ଦୃଢ଼ ମତ ଦେଲା । ରାଜା ନଗରରକ୍ଷୀଙ୍କୁ ଡ଼କାଇ ଆଦେଶ ଦେଇ କହିଲେ ଯେ, ତାଙ୍କର ଯେଉଁ ଗଧଟି ସିଂହଦ୍ୱାର ନିକଟରେ ଅଛି; ସେହି ଗଧ ଦେହରେ ତାଙ୍କର ଏକ ନାମ ଫଳକ ଟଙ୍ଗାଇ ଦେବାପାଇଁ ଏବଂ ଏହି ନାମ ଫଳକକୁ ପଢ଼ି; ତାହା ରାଜାଙ୍କର ଗଧ ବୋଲି ଜାଣି, ଆସନ୍ତାକାଲି ଠାରୁ ପଣ୍ଡିତ ସୁଘୋଷ ସେହି ଗଧକୁ ଦଣ୍ଡବତ କରି ଦରବାରକୁ ଆସିବା ପାଇଁ ରାଜା ତାଙ୍କୁ ନିର୍ଦ୍ଦେଶ ଦେଲେ ।

ନଗରରକ୍ଷୀ ଗଧର ବେକରେ ଏକ ନାମ ଫଳକ ଝୁଲାଇ ଦେଲେ । ସେହି ନାମ ଫଳକରେ ଲେଖାଥିଲା—"ରାଜା ସୁରସେନ" । ବହୁ ଲୋକ ଏହି ବିଚିତ୍ର କାର୍ଯ୍ୟ ସଂପର୍କରେ କିଛି ବୁଝି ପାରିଲେ ନାହିଁ । ପଣ୍ଡିତ ସୁଘୋଷ ପରଦିନ ଦରବାରକୁ ଆସିଲେ । ରାଜା ତାଙ୍କୁ ପଚାରିଲେ—"ଆଦେଶ ଅନୁଯାୟୀ ଆଜି

ଆପଣ କାର୍ଯ୍ୟ କରନ୍ତୁ ତ ପଣ୍ଡିତ ମହୋଦୟ ?" ପଣ୍ଡିତ ସୁଘୋଷ ଉତ୍ତରରେ କହିଲେ—"ମହିମା ! ମୁଁ ଯେତେବେଳେ ଆଜ ସିଂହଦ୍ୱାର ନିକଟରେ ଆସି ପହଞ୍ଚିଲି, ଦେଖିଲି ଯେ ହଜାର ହଜାର ଲୋକ, ଆପଣଙ୍କ ଗଧ ନିକଟରେ ରୁଣ୍ଡ ହୋଇ ନାନା ପ୍ରକାରର ଟିକ୍କା ଟିପ୍ପଣୀ ଦେଉଥିଲେ । ଗଧ ବେକରେ ଝୁଲୁଥିବା ଆପଣଙ୍କର ନାମାଙ୍କିତ ଫଳକଟିକୁ ପଢ଼ି କେହି କେହି ବୋକା ଲୋକ କହୁଥିଲେ— 'ଏହି ଗଧ କ'ଣ ରାଜା ସୁରସେନ ।' ଅନ୍ୟ କେତେ ଉପହାସ କରି କହୁଥିଲେ—'ଏହି ଗଧ କଣ ଆମକୁ ଶାସନ କରୁଛି ।' ଆଉ କେତେକ ଉଚ୍ଚ ଚିତ୍କାର କରି କହୁଥିଲେ—'ଗଧ ସୁରସେନକୁ ବାନ୍ଧିଛି କାହିଁକି ? ମୁକ୍ତ କରିଦିଅ ।" ଏ ସବୁ ଦେଖି ଆପଣଙ୍କ ସମ୍ମାନ ଦୃଷ୍ଟିରୁ ମୁଁ ସେ ଗଧକୁ ପ୍ରଣାମ କଲି ନାହିଁ । ମୁଁ ଯଦି ସେ ଗଧକୁ ପ୍ରଣାମ କରିଥାନ୍ତି, ତାହେଲେ ସେଠାରେ ଉପସ୍ଥିତ ଥିବା ଲୋକେ ବିଚାରିଥାନ୍ତେ ଏ ଗଧ ନିଶ୍ଚୟ 'ରାଜା ସୁରସେନ ।' ଆଉ କେତେକ ନିଶ୍ଚୟ ଭାବିଥାନ୍ତେ, ଯେହେତୁ ମୋ ପରି ପଣ୍ଡିତ ସେ ଗଧକୁ ପ୍ରଣାମ କରୁଛି, ତେଣୁ ସେ ଗଧ ନିଶ୍ଚୟ ରାଜା ସୁରସେନଙ୍କ ଛଡ଼ା ଅନ୍ୟ କେହି ହୋଇ ନପାରେ । ଏହା ଦ୍ୱାରା ଆପଣଙ୍କ ସମ୍ମାନରେ ନିଶ୍ଚୟ ଆଞ୍ଚ ଆସିଥାନ୍ତା । ତେଣୁ ମହିମାଙ୍କ ସମ୍ମାନ ରକ୍ଷା ଦୃଷ୍ଟିରୁ ମୁଁ ସେ ଗଧକୁ ପ୍ରଣାମ ନ କରି ସେଠାରୁ ଚାଲି ଆସିବାକୁ ବାଧ୍ୟ ହେଲି ।

ରାଜା ଏ କଥା ଶୁଣି ଅତ୍ୟନ୍ତ ମର୍ମାହତ ଓ ବିବ୍ରତ ହୋଇ-ଉଠିଲେ । ରାଗରେ ବିଚଳିତ ହୋଇ ସେ ପଣ୍ଡିତ ସୁଘୋଷଙ୍କୁ ଆଦେଶ ଦେଇ କହିଲେ—"ଶୁଣ ପଣ୍ଡିତ ସୁଘୋଷ ! ଆସନ୍ତାକାଲି ଠାରୁ ତୁମେ ଆଉ ରାଜ ସଭାକୁ ଆସିବ ନାହିଁ । କାଲିଠାରୁ ତୁମେ ମୋର ଘୋଡ଼ା-ଶାଳକୁ ଯାଇ ଘୋଡ଼ାମାନଙ୍କର ଦାୟିତ୍ୱ ବୁଝିବ ଏବଂ ସେମାନଙ୍କୁ ଗଣି, ସେମାନଙ୍କର ସଠିକ ହିସାବ ମୋତେ ପ୍ରତିଦିନ ସନ୍ଧ୍ୟାବେଳେ କହିଯିବ ।"

ରାଜାଙ୍କ ଆଦେଶ ଅନୁଯାୟୀ ପରଦିନ ପଣ୍ଡିତେ ଘୋଡ଼ାଶାଳ ଦାୟିତ୍ୱ ବହନ କଲେ । ରାଜାଙ୍କର ଅସ୍ତାବଲ (ଘୋଡ଼ାଶାଳ)ରେ ପାଞ୍ଚଶହ

ସୁଦକ୍ଷ ଘୋଟକ ରହୁଥିଲେ । ଗୋପନରେ ରାଜା ନଗରରକ୍ଷୀଙ୍କୁ ଡକାଇ ନିର୍ଦ୍ଦେଶ ଦେଇ କହିଥିଲେ—ପାଞ୍ଚଶହ ଘୋଡ଼ାରୁ ପାଞ୍ଚଟି ଘୋଡ଼ାଙ୍କୁ ଲୁଚାଇ ଦିଆଗଲେ, ପଣ୍ଡିତ ସୁଘୋଷ ଘୋଡ଼ାମାନଙ୍କର ସଠିକ ହିସାବ ଆଉ ଦେଇ ପାରିବେ ନାହିଁ ; ତେଣୁ ଘୋଡ଼ା ଚୋରି ଅପରାଧରେ ତାଙ୍କୁ ମୃତ୍ୟୁଦଣ୍ଡ ଦେବାପାଇଁ ସୁଯୋଗ ମିଳିଯିବ । ରାଜାଙ୍କ ଆଦେଶ ଅନୁଯାୟୀ ରକ୍ଷୀ ପାଞ୍ଚଟି ଘୋଡ଼ା ଲୁଚାଇ ରଖି ଦେଇଥିଲେ । ଯେଉଁଦିନ ସୁଘୋଷ ପଣ୍ଡିତ ଘୋଡ଼ାଶାଳ ଦାୟିତ୍ୱ ନେଲେ, ସେ ଦିନ ସେ ଘୋଡ଼ାଶାଳ ନିକଟରେ ଥିବା ଏକ ପୁରାତନ ଚଉକି ଉପରେ ବସି ବସି, ସନ୍ଧ୍ୟା ସମୟରେ ରାଜାଙ୍କ ନିକଟକୁ ଘୋଡ଼ାମାନଙ୍କର ହିସାବ ନେଇ ଯାଇଥିଲେ । ପଣ୍ଡିତଙ୍କୁ ଦେଖି ରାଜା ସୁରସେନ ପଚାରିଲେ—"ଘୋଡ଼ା-ମାନଙ୍କର ସଠିକ ହିସାବ ଆପଣ ଆଣିଛନ୍ତି ତ ?" ପଣ୍ଡିତେ ରାଜାଙ୍କ ହାତକୁ ଘୋଟକ ହିସାବ ଖାତା ବଢ଼ାଇ ଦେଇ କହିଲେ—"ଆଣିଛୁ ମହିମା ! ଏହି ଖାତାରେ ତାହା ସମସ୍ତ ଲିପିବଦ୍ଧ ହୋଇଅଛି ।"

ଏହାପରେ ରାଜା ଖାତା ଲେଉଟାଇ ଦେଖିଲେ, ସେହିଦିନ ଘୋଡ଼ାମାନଙ୍କର ହିସାବ ସ୍ଥାନରେ ଏକ ବିରାଟ 'ଶୂନ' ଲେଖା ଯାଇଛି । ଖାତାର ଅନ୍ୟପୃଷ୍ଠାର ଶେଷରେ ରାଜା ଦେଖିଲେ, ସେ ପୃଷ୍ଠାରେ ସେହିପରି ମଧ୍ୟ ଏକ ଶୂନ ଲେଖା ଯାଇଛି । ସେ ବିସ୍ମୟରେ ପଣ୍ଡିତଙ୍କ ମୁହଁକୁ ଚାହିଁ କହିଲେ—"ଆପଣ କଣ ପାଗଳ ? ହିସାବ ସ୍ଥାନରେ ଶୂନ ଛଡ଼ା ତ ଅନ୍ୟ କିଛି ନାହିଁ । ଏହା ଆପଣଙ୍କର କେଉଁ ହିସାବ ପଦ୍ଧତି ମୁଁ ବୁଝିପାରୁ ନାହିଁ ?" ପଣ୍ଡିତେ ଉତ୍ତରରେ କହିଲେ—"ମହିମା ! ମୁଁ ଘୋଡ଼ା ଦାୟିତ୍ୱ ନେବା ସମୟରେ ଘୋଡ଼ାମାନଙ୍କର ହିସାବ ଥିଲା 'ଶୂନ' ଓ ଆସିବା ସମୟରେ ସେ ହିସାବ ମଧ୍ୟ 'ଶୂନ' ରହିଛି । କାରଣ ଆପଣଙ୍କ ଆଦେଶ ମୁଁ ଯଥାଯଥ ଭାବେ ପାଳନ କରି ନାହିଁ ବୋଲି ଆପଣ ଅନୁଭବ କରି, ଆପଣଙ୍କର ପଣ୍ଡିତ ସଭାରେ ମୋର ସ୍ଥାନ ଶୂନ କରିଦେଲେ । ସେହିପରି ଘୋଡ଼ାମାନେ ମୋତେ ଖାତିର ନ କରିବାରୁ ଓ ମୋର କଥା ନ ମାନିବାରୁ ମୁଁ ମୋର ହିସାବ ଖାତାରେ ସେମାନଙ୍କୁ ମଧ୍ୟ ଶୂନ କରି ଦେଇଛି । ଆଶାକରେ ମୋର ଏ ଗଣନାକୁ ଆପଣ ନିଶ୍ଚୟ ପସନ୍ଦ କରିବେ ।"

ପଣ୍ଡିତଙ୍କର ବଚନୋକ୍ତି ଶୁଣି ରାଜା ଭୟଙ୍କର ମୂର୍ତ୍ତି ଧାରଣ କରି କହିଲେ—"ତୁମେ ଏକ ଅପଦାର୍ଥ । ତୁମକୁ ମୁଁ ବର୍ତ୍ତମାନ ହତ୍ୟା କରିଥାନ୍ତି; କିନ୍ତୁ ତୁମେ ମୋର ପିତାଙ୍କ ସମୟରୁ ରହି ଆସିଥିବାରୁ ପିତାଙ୍କର ସ୍ୱର୍ଗୀୟ ଆତ୍ମାର ମର୍ଯ୍ୟାଦା ଦୃଷ୍ଟିରୁ ମୁଁ ତାହା କରି ପାରୁ ନାହିଁ ; କିନ୍ତୁ ଆସନ୍ତାକାଲି ଦରବାରରେ ସବୁ ପଣ୍ଡିତମାନେ ଯେଉଁ ପରି ମତ ଦେବେ, ସେହିପରି ଭାବେ ତୁମର ବିଚାର କରାଯିବ । ଆଜି ଗୋଟିଏ ରାତି ତୁମେ ଶାନ୍ତିରେ ନିଶ୍ୱାସ ନେଇପାର ।"

ଏ ଘଟଣାର ପରଦିନ ପଣ୍ଡିତ ସୁଘୋଷ ଯେତେବେଳେ ଆସି ଦରବାରରେ ପହଞ୍ଚିଲେ, ସେତେବେଳେ ଦରବାର ଭିତରେ ଏକ ହଇଚଇ ଜମି ରହିଥିଲା । ପଣ୍ଡିତମାନେ, ବିଷଣ୍ଣ ଭାବେ ତଳକୁ ମୁହଁ କରି ବସି ରହିଥିଲେ । ରାଜାଙ୍କ ସମ୍ମୁଖରେ ଜଣେ ଅଚିହ୍ନା ଯୁବକ ଦଣ୍ଡାୟମାନ ଥିଲେ । ରାଜା ସୁରସେନ କମ୍ପିତ ଶରୀରରେ ଦଣ୍ଡାୟମାନ ଯୁବକକୁ କହୁଥିଲେ—"ଶୁଣ ଦୂତ ! ତୁମ ରାଜାଙ୍କର ଆଦେଶନାମାରୁ ମୁଁ ଜାଣିବାକୁ ପାଇଲି ଯେ—ତୁମ ରାଜା ମୋ ରାଜ୍ୟ ଦଖଲ କରିବା ପାଇଁ ମୋତେ ଯୁଦ୍ଧ ଧମକ ଦେଉଛନ୍ତି । ଏପରି ଅଯଥା ଧମକକୁ କଦାପି ବରଦାସ୍ତ କରାଯିବ ନାହିଁ । ତୁମେ ଯାଅ; ତୁମ ରାଜାଙ୍କୁ କହିବ ଯଦି ଜୀବନ ପ୍ରତି ତାଙ୍କର ଲୋଭ ଥାଏ, ସେ ତୁରନ୍ତ ମୋ ରାଜ୍ୟ ସୀମା ଛାଡ଼ି ପଛକୁ ହଟିଯାନ୍ତୁ । ତା ନହେଲେ ପରିଣାମ ଅତି ଭୟଙ୍କର ହେବ ।" ଅନ୍ୟ ରାଜ୍ୟରୁ ଆସିଥିବା ପତ୍ର ବାହକ ଦୂତ ଜଣକ ରାଜାଙ୍କୁ ଅଭିବାଦନ କରି ଚାଲିଗଲେ । ଏହାପରେ ରାଜା ନିଜର ପଣ୍ଡିତମାନଙ୍କୁ ପଚାରିଲେ—"ଏପରି ସମୟରେ କି ପ୍ରତିକାର କରାଯାଇ ପାରେ ।" ତୋଷାମଦକାରୀ ପଣ୍ଡିତମାନେ କହିଲେ—"ମଣିମାଙ୍କ ପରି ବୀର ଏ ପୃଥିବୀରେ ଆଉ କେହି ନାହାଁନ୍ତି । କେବଳ ମଣିମା ଗର୍ଜିବା ମାତ୍ରେ ସମସ୍ତ ଶତ୍ରୁ ସୈନ୍ୟ ନିଶ୍ଚିତ ଛତ୍ରଭଙ୍ଗ ଦେଇ ପଳାଇ ଯିବେ ।" ଏ କ୍ଷେତ୍ରରେ ସୈନ୍ୟସାମନ୍ତଙ୍କର ସାହାଯ୍ୟ ଆବଶ୍ୟକତା ନାହିଁ ବୋଲି ପଣ୍ଡିତମାନେ ମତ ଦେଲେ । ଏ ବିପଦ ସମୟରେ ପଣ୍ଡିତ ସୁଘୋଷଙ୍କର ମତାମତ ଜାଣିବା ପାଇଁ ରାଜା ତାଙ୍କୁ ପଚାରିଲେ—"ମୁଁ ଜାଣେ ତୁମେ ଜଣେ ବୁଦ୍ଧିମାନ ପଣ୍ଡିତ । ମୋର ବୀରତ୍ୱ ବିଷୟରେ ତୁମର ଧାରଣା

କ'ଣ ତାହା ନିର୍ଭୟରେ ପ୍ରକାଶ କର ।" ସଭାରେ ଉପସ୍ଥିତ ଥିବା ସମସ୍ତ ତୋଷାମଦକାରୀଙ୍କ ମତକୁ ସମର୍ଥନ କରି ପଣ୍ଡିତ ସୁଘୋଷ କହିଲେ— "ମହିମା ! ଆପଣ ହେଉଛନ୍ତି ପ୍ରକୃତରେ ବୀର । ଆପଣଙ୍କ ପୂର୍ବପୁରୁଷମାନଙ୍କର ବୀର ରକ୍ତ ଆପଣଙ୍କ ଧମନୀରେ ପ୍ରବାହିତ ହେଉଛି ବୋଲି ମୁଁ ବିଶ୍ୱାସ କରେ । ତେଣୁ ଆପଣ ଏଠାରେ ଘରୁ ପରି ବସି ନ ରହି ଶତ୍ରୁ ସୈନ୍ୟମାନଙ୍କର ସମ୍ମୁଖୀନ ହୁଅନ୍ତୁ । ମୋର ବିଶ୍ୱାସ ଆପଣଙ୍କର ବୀରତ୍ୱ ବଳରେ ଶତ୍ରୁସୈନ୍ୟମାନେ ନିଶ୍ଚୟ ପରାଜିତ ହେବେ ଓ ଏ ରାଜ୍ୟ ମୁଣ୍ଡରେ ପରାଧୀନତାର କଳଙ୍କ ଦାଗ ଆଉ ଲାଗିବ ନାହିଁ ।" ବିପଦ ସମୟରେ ରାଜା ଏ କଥାକୁ ବିଶ୍ୱାସ କଲେ । ଅନ୍ୟ ଗ୍ରନ୍ଥକାର ପଣ୍ଡିତମାନଙ୍କର ଉପଦେଶ ଅନୁଯାୟୀ, ସେ ଯୁଦ୍ଧ ଭୂମିକୁ ଯିବା ଲାଗି ସୈନ୍ୟସାମନ୍ତ ନ ନେଇ ଅସ୍ତ୍ରହୀନ ଭାବେ ବାହାରି ପଡ଼ିଲେ । ତୋଷାମଦକାରୀ ପଣ୍ଡିତମାନଙ୍କୁ ତଥା ପଣ୍ଡିତ ସୁଘୋଷଙ୍କୁ ତାଙ୍କ ସଙ୍ଗରେ ଯିବା ପାଇଁ ରାଜା ସେମାନଙ୍କୁ ଆଦେଶ ଦେଲେ । ରାଜାଙ୍କ ଡରେ ପଣ୍ଡିତମାନେ ତାଙ୍କର ପଛେ ପଛେ ଯିବାକୁ ଲାଗିଲେ । ରାଜା ଅସ୍ତ୍ରହୀନ ଭାବେ ଖୁବ୍ ଆଡମ୍ବର ପୂର୍ଣ୍ଣ ପରିବେଶ ମଧ୍ୟରେ ଯୁଦ୍ଧ ଭୂମିରେ ପହଞ୍ଚିଲେ । ନିରସ୍ତ୍ର ରାଜା ସୁରସେନଙ୍କର ପାଗଳାମୀକୁ ଉପହାସ କରି, ଶତ୍ରୁସୈନ୍ୟମାନେ ତାଙ୍କୁ ଅକ୍ଳେଶରେ ବନ୍ଦୀ କଲେ । ଯେତେବେଳେ ଶତ୍ରୁ ସୈନ୍ୟଙ୍କ ଘେରରେ ରାଜା ପଡ଼ିଗଲେ, ସେତେବେଳେ ନିଜ ଜୀବନ ଭୟରେ ତୋଷାମଦକାରୀ ପଣ୍ଡିତମାନେ ଘରୁ ପରି ଲୁଚି ପଳାଇଗଲେ । କେବଳ ପଣ୍ଡିତ ସୁଘୋଷ ରାଜାଙ୍କୁ ଉତ୍ସାହିତ କରିବା ପାଇଁ ତାଙ୍କ ପଛେ ପଛେ ରହିଥିବା ହେତୁ, ସେ ମଧ୍ୟ ଶତ୍ରୁସୈନ୍ୟମାନଙ୍କ ଦ୍ୱାରା ବନ୍ଦୀ ହେଲେ ।

ଆକ୍ରମଣକାରୀ ରାଜା ବିଭୂପାଦ ନିଜ ଦରବାରକୁ ପଣ୍ଡିତ ସୁଘୋଷଙ୍କୁ ବନ୍ଦୀ ଅବସ୍ଥାରେ ଅଣାଇ କହିଲେ—"ମୁଁ ଜାଣେ ଆପଣ ବିକ୍ରମ ନଗରର ଜଣେ ପ୍ରସିଦ୍ଧ ପଣ୍ଡିତ ଏବଂ ସୁରସେନଙ୍କ ପରି ଜଣେ ତୋଷାମଦ ପ୍ରିୟ ରାଜାଙ୍କୁ ଆପଣ ଆଦୌ ଭଲ ପାଆନ୍ତି ନାହିଁ । ତେଣୁ ଏ ରାଜ୍ୟର ଶାସନ ଦାୟିତ୍ୱ ମୁଁ ହାତକୁ ନେଇଥିବାବେଳେ ଆପଣ ମୋତେ ନିଶ୍ଚୟ ପୂର୍ଣ୍ଣ ପ୍ରାଣରେ ଏ କାର୍ଯ୍ୟ ପାଇଁ ସାହାଯ୍ୟ କରିବେ ବୋଲି ମୁଁ ବିଶ୍ୱାସ କରେ । ପୂର୍ବ ସମ୍ବାଦରୁ ମୁଁ ଜାଣିଛି

ରାଜା ସୁରସେନଙ୍କର ବନ୍ଧୁ ଅତ୍ୟାଚାରର ସମ୍ମୁଖୀନ ଆପଣ ବାରମ୍ବାର ହୋଇଛନ୍ତି । ଆମେ ସୁରସେନଙ୍କୁ ବନ୍ଧ କରିବା, ଆପଣ ପକ୍ଷରେ ଏକ ସୌଭାଗ୍ୟର କଥା । ଆପଣଙ୍କୁ ମୁଁ ମୁକ୍ତ କରି ଦେଉଛି । ଏ ରାଜ୍ୟର ଶାସନ ବିଷୟରେ ପରାମର୍ଶ ଦାତା ଭାବେ ଆପଣ ଆଜଠାରୁ ଆମକୁ ସାହାଯ୍ୟ କରନ୍ତୁ ।”

ରାଜା ବିଭୂପାଦ ପଣ୍ଡିତ ସୁଘୋଷଙ୍କୁ ସଙ୍ଗେ ସଙ୍ଗେ ମୁକ୍ତ କରି ଦେଲେ । ପଣ୍ଡିତ ସୁଘୋଷ ନିଜର କିଛି ବକ୍ତବ୍ୟ କହିବା ପାଇଁ, ସେ ବିଭୂପାଦଙ୍କର ଅନୁମତି ଚାହିଁଲେ ଏବଂ ଆଗ୍ରହର ସହିତ ବିଭୂପାଦ ତାଙ୍କୁ ତାଙ୍କ ବକ୍ତବ୍ୟ ପ୍ରକାଶର ସ୍ୱାଧୀନତା ମଧ୍ୟ ଦେଲେ । ନିଜ ବକ୍ତବ୍ୟରେ ପଣ୍ଡିତ ସୁଘୋଷ କହିଲେ—“ରାଜା ବିଭୂପାଦ ! ତୁମେ ଆମ ରାଜାଙ୍କୁ ବନ୍ଧ କରି ଖୁବ୍ ଅନ୍ୟାୟ କରିଛ । କାରଣ ନିରସ୍ତ୍ର ଅବସ୍ଥାରେ ଶତ୍ରୁକୁ ବନ୍ଧ କରିବା ଯୁଦ୍ଧ ନିୟମର ବହିର୍ଭୂତ କାର୍ଯ୍ୟ । ସୁରସେନଙ୍କ ପରି ବୀର ଅସ୍ତ୍ରହୀନ ଅବସ୍ଥାରେ କଦାପି ଯୁଦ୍ଧ କରିବା ପାଇଁ ଆସି ନ ଥିଲେ । ବନ୍ଧୁତ୍ୱର ମନୋଭାବ ନେଇ ସେ ଆପଣଙ୍କର ନିକଟକୁ ଆସିଥିଲେ—ଆପଣ କାହିଁକି ଏ ରାଜ୍ୟ ଆକ୍ରମଣ କରିଛନ୍ତି ତାହା ବୁଝିବା ପାଇଁ, କିନ୍ତୁ ଆପଣ ତାଙ୍କୁ ଆଲୋଚନାର ସୁଯୋଗ ନଦେଇ ଯେପରି ଭାବରେ ବନ୍ଧ କଲେ , ତାହା ଆପଣଙ୍କର ବୀରତ୍ୱ ପ୍ରତି ଅବମାନନା । ଦ୍ୱିତୀୟ କଥା; ରାଜା ସୁରସେନ ମୋ ପ୍ରତି ଅବିଚାର କରିଛନ୍ତି ବୋଲି ଆପଣ ଯେଉଁ ସମ୍ବାଦ ପାଇଛନ୍ତି, ତାହା ହେଉଛି ଆମ ରାଜ୍ୟର ଘରୋଇ ବ୍ୟାପାର । ତହିଁରୁ ଆପଣଙ୍କ ପରି ରାଜା ସୁଯୋଗ ଉଠାଇବାର ଚେଷ୍ଟା କରିବା ଅତି ନିନ୍ଦନୀୟ କାର୍ଯ୍ୟ । ନିଜର ପୋଷା କୁକୁର ଯେତିକି ଦରକାରୀ, ପରର ପୋଷା ସିଂହ ତା ଅପେକ୍ଷା ବେଶୀ ମାରାତ୍ମକ । ମୋ କଥାର ଗୁରୁତ୍ୱ ଆପଣଙ୍କ ପରି ଜଣେ ଶ୍ରେଷ୍ଠ ରାଜା ନିଶ୍ଚୟ ହୃଦୟଙ୍ଗମ କରି ପାରିବେ ।”

ପଣ୍ଡିତ ସୁଘୋଷଙ୍କର ବକ୍ତବ୍ୟରେ ମର୍ମାହତ ହୋଇ ସୁରସେନଙ୍କୁ ମୁକ୍ତ କରାଇ, ତାଙ୍କ ସହିତ ବନ୍ଧୁତ୍ୱପୂର୍ଣ୍ଣ ଭାବେ ଆଲୋଚନା କରିବା ପାଇଁ, ରାଜା ବିଭୂପାଦ ତାଙ୍କୁ ନିଜ ଦରବାରକୁ

ନେଇ ଆସିଲେ; କିନ୍ତୁ ପଣ୍ଡିତ ସୁଘୋଷ ଆଲୋଚନା କରିବାକୁ ସୁଯୋଗ ନ ଦେଇ କହିଲେ—"ମହିମା ? ଆପଣଙ୍କ ଦ୍ୱାରା ବନ୍ଧ ହେବା ଫଳରେ ଆମ ରାଜାଙ୍କର ଧୈର୍ଯ୍ୟଚ୍ୟୁତି ଘଟିଛି । ତେଣୁ ବର୍ତ୍ତମାନର ଆଲୋଚନା ଏକ ଗୁରୁତ୍ୱପୂର୍ଣ୍ଣ ହେବ ବୋଲି ମୁଁ ବିଶ୍ୱାସ କରିପାରୁ ନାହିଁ । ଆମ ରାଜାଙ୍କୁ ଦୁଇଦିନ ଆପଣ ସମୟ ଦିଅନ୍ତୁ । ଦୁଇଦିନ ପରେ ଆମେ ଆପଣଙ୍କର ସହିତ ଆଲୋଚନାରେ ଯୋଗଦେବୁ । ଆଲୋଚନା ଯଦି ଆମେ ନକରୁ ଆପଣ ଦୁଇଦିନ ଅପେକ୍ଷା କରି ଯୁଦ୍ଧ ଘୋଷଣା କରି ପାରିବେ । ସେତେବେଳେ ଆପଣଙ୍କ ଯୁଦ୍ଧ ଘୋଷଣା ବିରୁଦ୍ଧରେ ଆମର ପ୍ରତିବାଦ କରିବାର ଆଉ କିଛି ରହିବ ନାହିଁ ।"

ପଣ୍ଡିତ ସୁଘୋଷଙ୍କର ଅନୁରୋଧ ରକ୍ଷା କରି ରାଜା ବିଭୂପାଦ ବିକ୍ରମ ନଗରର ରାଜା ସୁରସେନ ଓ ପଣ୍ଡିତ ସୁଘୋଷଙ୍କୁ ସମ୍ମାନର ସହିତ ନିଜ ରାଜଧାନୀକୁ ଫେରି ଯିବା ପାଇଁ ଆଦେଶ ଦେଲେ ।

ପଣ୍ଡିତ ସୁଘୋଷଙ୍କ ସହିତ ରାଜା ସୁରସେନ ନିଜ ରାଜଧାନୀକୁ ଫେରିଆସି, ପ୍ରତିଶୋଧ ନେବା ପାଇଁ, ଶତ୍ରୁ ସୈନ୍ୟଙ୍କୁ ପରାସ୍ତ କରିବା ନିମିତ୍ତ ନିଜର ସୈନ୍ୟମାନଙ୍କୁ ପ୍ରସ୍ତୁତ କରାଇଲେ । ଏ କାର୍ଯ୍ୟରେ ରାଜାଙ୍କୁ ଉତ୍ସାହିତ କରିବା ଲାଗି, ତାଙ୍କ ପାଖେ ପାଖେ ରହି ପଣ୍ଡିତ ସୁଘୋଷ ତାଙ୍କ ବୀରତ୍ୱର ଭୂୟସୀ ପ୍ରଶଂସା କରିବାକୁ ଲାଗିଲେ । ପଣ୍ଡିତଙ୍କ ଉତ୍ସାହ ଫଳରେ ରାଜାଙ୍କର ଆଳସ୍ୟ ଦୂର ହୋଇଗଲା ଓ ସେ ଯୁଦ୍ଧ କରିବା ପାଇଁ ଉତ୍ସାହିତ ହୋଇ ଉଠିଲେ ।

ଦୁଇଦିନ ଅପେକ୍ଷା କରିବା ପରେ ତୃତୀୟ ଦିନ ପ୍ରତ୍ୟୁଷରୁ ଶତ୍ରୁ ରାଜା ବିଭୂପାଦ, ସୁରସେନଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲେ । ତାଙ୍କର ଆହ୍ୱାନରେ ପଛଘୁଞ୍ଚା ନ ଦେଇ ରାଜା ସୁରସେନ ନିଜେ ଯୁଦ୍ଧର ସମ୍ମୁଖୀନ ହେଲେ । ଦୀର୍ଘ ସାତଦିନ ଧରି ରକ୍ତାକ୍ତ ସମର ପରେ ରାଜା ବିଭୂପାଦ ଯୁଦ୍ଧରେ ପରାଜିତ ହୋଇ ନିହତ ହେଲେ ଓ ବିଜୟୀ ଭାବେ ସୁରସେନ ନିଜ ସୈନ୍ୟଙ୍କୁ ନେଇ ଫେରିଆସି ବିଜୟ ଉତ୍ସବର ଆୟୋଜନ କରାଇଲେ ।

ଯେଉଁଦିନ ବିଜୟ ଉତ୍ସବର ଆୟୋଜନ କରାଗଲା, ସେ ଦିନ ପଣ୍ଡିତ ସୁଘୋଷ ସନ୍ଧ୍ୟା ପର୍ଯ୍ୟନ୍ତ ରାଜ ଦରବାରକୁ ଆସି ନ ଥିଲେ ଏବଂ ସନ୍ଧ୍ୟା ସମୟରେ ଯେତେବେଳେ ପଣ୍ଡିତେ ଦରବାରକୁ ଆସିଲେ, ସେତେବେଳେ ସେ ସଙ୍ଗରେ ଏକ ବନ୍ଧା ଯୁବକକୁ ନେଇ ଆସିଥିଲେ । ରାଜା ସୁରସେନ ପଣ୍ଡିତଙ୍କ ସହିତ ବନ୍ଧା ଯୁବକକୁ ଦେଖି ଆଶ୍ଚର୍ଯ୍ୟ ହୋଇ ପଚାରିଲେ—"ଏ ଯୁବକ କିଏ ପଣ୍ଡିତ ମହାଶୟ !" ପଣ୍ଡିତେ ଯୁବକର ପରିଚୟ ଦେଇ କହିଲେ—"ମହିମା ! ଏ ନରାଧମ ହେଉଛି ରାଜ୍ୟର କଳଙ୍କ । ଗୁପ୍ତଚର କାର୍ଯ୍ୟକରି, ଏହି ଯୁବକ ଶତ୍ରୁ ରାଜାଙ୍କୁ ଏଠାକୁ ଡାକି ନେଇ ଆସିଥିଲା । ମହିମା ଏହାର ଉପଯୁକ୍ତ ଦଣ୍ଡ ବିଧାନ କରନ୍ତୁ ।"

ରାଜା ଯୁବକକୁ କିଛିକ୍ଷଣ ପାଇଁ ନିରୀକ୍ଷଣ କରିବା ପରେ ତାହାର ମୁଣ୍ଡ କାଟି ଦେବା ଲାଗି ଘାତକଙ୍କୁ ଆଦେଶ ଦେଲେ । ଘାତକ ତତ୍କ୍ଷଣାତ ଦରବାରର ବାହାରକୁ ନେଇ, ଯୁବକର ଶରୀରରୁ ମୁଣ୍ଡକୁ ଅଲଗା କରିଦେଲେ । ଯୁବକର ମୃତ୍ୟୁ ସଙ୍ଗେ ସଙ୍ଗେ ଜଣେ ଆଲୁଳାୟିତ କେଶା ବୃଦ୍ଧା ଯୁବକର ମସ୍ତକହୀନ ଶରୀରକୁ ଧରି ଚିତ୍କାର କରି କାନ୍ଦି କାନ୍ଦି କହିବାକୁ ଲାଗିଲେ—"ତୁମେ ପଣ୍ଡିତ ନା ନୃଶଂସ ! ବାପ ହୋଇ ପୁଅର ଏପରି ମୃତ୍ୟୁ ତୁମେ ଧୈର୍ଯ୍ୟର ସହିତ ଦେଖି ପାରିଲ ? ଏ ଦୃଶ୍ୟ ଦେଖିବା ଆଗରୁ ତୁମେ ନିଜ ଆଖିକୁ ଫୁଟାଇ ଦେଇ ପାରିଲ ନାହିଁ ?" ପଣ୍ଡିତ ସୁଘୋଷ ବୃଦ୍ଧାଙ୍କ ନିକଟକୁ ଧାଇଁଯାଇ ତାଙ୍କୁ ଭୂମିରୁ ଉଠାଇ ତାଙ୍କର ହାତ ଧରି ବାହାରକୁ ଠେଲି ଠେଲି ନେଇ ଚାଲିଗଲେ । ଦରବାରର ବହୁ ଲୋକ ଲକ୍ଷ୍ୟ କରିଥିଲେ ଯୁବକର ମୃତ୍ୟୁ ଚିତ୍କାର ବେଳେ ପଣ୍ଡିତଙ୍କର ଦେହ ଥରି ଉଠିଥିଲା ଏବଂ ଝରଣାର ପାଣି ପରି ତାଙ୍କ ଆଖିରୁ ଧାର ଧାର ଲୁହ ଗଡ଼ି ପଡ଼ୁଥିଲା । ସେତେବେଳେ ଆଶ୍ଚର୍ଯ୍ୟ ହୋଇ ରାଜା ପଚାରିଲେ—"ଏ ଶିରଚ୍ଛେଦ କରାଯାଇଥିବା ଯୁବକ କଣ ତୁମର ପୁତ୍ର ?" କିନ୍ତୁ ପଣ୍ଡିତ ସୁଘୋଷ ଏହାର କୌଣସି ଉତ୍ତର ଦେଇ ପାରି ନ ଥିଲେ । ରାଜା ଲକ୍ଷ୍ୟ କରିଥିଲେ, ସେତେବେଳେ କେବଳ ତାଙ୍କର ତଳ ଓଠଟି କମ୍ପି ଉଠିଥିଲା ।

ସେ ଦିନ ରାଜଧାନୀରେ ଚାଲିଥିବା ଉତ୍ସବ, ଯୁବକର ମୃତ୍ୟୁଦଣ୍ଡ ପରେ ପରେ ବନ୍ଦକରି ଦିଆଯାଇଥିଲା । ପଣ୍ଡିତ ସୁଘୋଷ ଓ ତାଙ୍କ ସ୍ତ୍ରୀଙ୍କର ସନ୍ଧାନ ସେହି ଦିନଠାରୁ ଆଉ ମିଳି ନଥିଲା । ରାଜା ବହୁ ଅନୁସନ୍ଧାନ କରି ଦୀର୍ଘଦିନ ଅପେକ୍ଷା କରିବା ପରେ ସିଂହଦ୍ୱାରର ଠିକ୍ ସମ୍ମୁଖରେ ଏକ ମାର୍ବଲ ପ୍ରସ୍ତରର ଖମ୍ବ ପଣ୍ଡିତ ସୁଘୋଷଙ୍କର ଅମର କୀର୍ତ୍ତି ଉଦ୍ଦେଶ୍ୟରେ ନିର୍ମାଣ କରିଥିଲେ ।

ସେହି ରାଜ ବଂଶର ଏହି ଇତିହାସ ପଢ଼ିସାରିବା ପରେ, ସେ ମାର୍ବଲ ପ୍ରସ୍ତର ଖମ୍ବକୁ ମୁଁ ଘନ ଘନ ଚୁମ୍ବନ କରିଥିଲି । ନିକଟସ୍ଥ ଗିର୍ଜାର ସମୟ ସଙ୍କେତ ଧ୍ୱନି ମୋର ସ୍ୱପ୍ନ ଭଙ୍ଗ କରିଥିଲା । ଅତୀତକୁ ସମ୍ମାନ କରି ମୁଁ ପୁଣି ଆଗକୁ ଚାଲିଲି ।



# ବର୍ଷୀ ସମ୍ବର୍ଦ୍ଧନା ଜୟନ୍ତୀ

ଏଥି ମଧ୍ୟରେ ସାରା ସହରରେ ବିଭିନ୍ନ ବ୍ୟକ୍ତି ବିଶେଷଙ୍କର ଜୟନ୍ତୀ, ସମ୍ବର୍ଦ୍ଧନା ଉତ୍ସବ, ମାନପତ୍ର ପ୍ରଦାନ ଇତ୍ୟାଦି କାର୍ଯ୍ୟକ୍ରମ ଜାକଜମକରେ ପାଳିତ ହୋଇଯାଇଥିଲା । ଦୀର୍ଘ ସାତବର୍ଷ ଧରି ସାରା ସହରରେ ଏପରି କାର୍ଯ୍ୟକ୍ରମର ବ୍ୟାପକ ପ୍ରସାର ଦେଖିବାକୁ ମିଳିଥିଲା । ପଇସାବାଲା ଲୋକମାନେ ପଇସା ଖଟାଇ, ଭଡ଼ାରେ ଲୋକବାକ ଯୋଗାଡ଼ କରି ନିଜର ସମ୍ବର୍ଦ୍ଧନା ପାଇଁ ବେଳେ ବେଳେ ଆୟୋଜନ କରୁଥିଲେ ।

ସବୁଠାରୁ ମଜାର କଥା ହେଲା ଶ୍ରୀମତୀ ନିରପ୍ରିୟା ଦେବୀ ନିଜର ଫିନାନ୍ସିଆଲ ବ୍ୟବସାୟରୁ କିଛି ପଇସା ରୋଜଗାର କରିସାରିବା ପରେ ଓ କଳା ବେପାରରେ ଧନ ସମୃଦ୍ଧ ହେବାପରେ, କିଛି କିଛି ସାମାଜିକ ପ୍ରତିଷ୍ଠା ପାଇଁ ଲାଳାୟିତ ହେଲେ; ନାରୀ କବିର ଗୌରବ ଅର୍ଜନ କରିବା ପାଇଁ ବ୍ୟାକୁଳ ହୋଇ ଉଠିଲେ । ତେଣୁ ଡ୍ରେସି, ପଞ୍ଚମ ବରାଡ଼, ବଙ୍ଗଳାଶ୍ରୀ ଗ୍ରଗରେ ଭାଷାକୋଷର ଅକ୍ଷର ସବୁ ଯୋଡ଼ାଯୋଡ଼ି କରି, ଚଟାପଟ୍ ଦୁଇ ତିନି ଖଣ୍ଡ ବହି ପ୍ରକାଶ କରି ପକାଇଲେ । ବେତାର କେନ୍ଦ୍ରର ସଙ୍ଗୀତ ଶିଳ୍ପୀମାନଙ୍କୁ ଟଙ୍କା ପଇସା ଦେଇ ନିଜ ଲିଖିତ କେତେକ ଗୀତ ବୋଲାଇଲେ । ଏହା ଫଳରେ ଲେଖିକା ଗୌରବ ନେବାପାଇଁ ସେ ହକ୍‌ଦାର ହୋଇ ଉଠିଲେ ଓ ନିଜେ ଜଣେ ପ୍ରତିଷ୍ଠିତା ଲେଖିକା ବୋଲି ମଧ୍ୟ ଦାବୀ କଲେ । ବାବୁ ଘଟୋତ୍କଚ ଅଧିକାରୀଙ୍କୁ ଧରାଧରି କରି ତାଙ୍କଦ୍ୱାରା ନିଜର ଗୋଟିଏ ଜୟନ୍ତୀ କରାଇନେଲେ । ଜୟନ୍ତୀ ଉତ୍ସବରେ ମନ୍ତ୍ରୀ ମହୋଦୟ ମାଇକ୍‌କୁ ହଲାଇ ଜୋରରେ କହିଲେ—"ଏହା ଏକ ସାଂସ୍କୃତିକ ବିପ୍ଳବ ।" ଖ୍ୟାତନାମା ମଣି ଶିରଣ୍ଡିଆ କବି କହିଲେ—"ଏତ ଖାଲି ସାଂସ୍କୃତିକ ବିପ୍ଳବ ନୁହେଁ; ଏହା ହେଉଛି ଜୀବନ୍ତ ଲୋକମାନଙ୍କର ସମ୍ମାନଜନକ ଶ୍ରାଦ୍ଧ ଉତ୍ସବ ।" ମହାତ୍ମା କବି ମାଟିର ମଣିଷ କହିଲେ—"ଏପରି

ଜୟନ୍ତୀ ଉତ୍ସବ ଦେଖି ମୁଁ ଅନୁଭବ କରୁଛି ଯେ, ସମାଜର ତଳ ସ୍ତରର ଲୋକମାନେ ଏଥର ଉପରକୁ ଆସିଛନ୍ତି" । ପ୍ରାବନ୍ଧିକ ସୂଁତାହାଁଠୀ ମହାପାତ୍ର କହିଲେ—"ଏ ନାରୀ କବିଙ୍କଠାରେ ଏପରି ଗୁଣ ଥିଲା ବୋଲି ମୁଁ ଆଜି ପ୍ରଥମ କରି ଜାଣିଲି ।" ଅଧ୍ୟାପିକା ମନଶୀଳା ମହାପାତ୍ର କହିଲେ—"କବିମାନଙ୍କର ଯଦି କିଛି କଳାତ୍ମକ ଗୁଣ ଥାଏ, ତା'ହେଲେ ହଠାତ୍ ସେ ଏହିପରି ଭାବରେ ଫୁଟିବା ଉଚିତ ।" ରାଜନୀତି ବିଜ୍ଞାନର ଅଧ୍ୟାପକ ଡକ୍ଟର କୁକୁରଆପଧା ଦାଶ କହିଲେ—"ମୁଁ ଏ ଲେଖିକାଙ୍କୁ ନ ଜାଣିଥିଲେ ମଧ୍ୟ ଆଜି ତାଙ୍କର କାର୍ଯ୍ୟ ଓ ତାଙ୍କୁ ଦେଖି ଭାବବିହ୍ୱଳ ହୋଇପଡ଼ୁଛି । ରାଜନୀତି ବିଜ୍ଞାନ ଛାଡ଼ି ଫିନାଇଲ ବିଜ୍ଞାନୀ ହେବାପାଇଁ ମୋର ଇଚ୍ଛା ହେଉଛି ।" ସର୍ବୋପରି ଉତ୍କଳ ରଇତ ସମାଜର ସଭାପତି ଡକ୍ଟର ପଲ୍ଲୀ ସଞ୍ଜୂନ ଦାଶ ଯେତେବେଳେ ସଭାରେ ଠିଆହୋଇ ତାଙ୍କର ବିପୁଳ ବପୁକୁ ଦୁଇଥର ହଲାଇଦେଲେ, ସେତେବେଳେ ସଭା-ସ୍ଥଳରେ ଏତେ ଜୋରରେ କରତାଳି ମାଡ଼ ହେଲା ଯେ, ଯାହା ଫଳରେ କି ତାଙ୍କ ଭାଷଣ ଆଦୌ ଆଉ ଶୁଣାଗଲା ନାହିଁ । ଡକ୍ଟର ଭେଷଜବିଦ୍ ସାହୁ ତାଙ୍କ ଡାକ୍ତରୀ ବିଦ୍ୟା ପ୍ରୟୋଗ କରି ମତ ଦେଇ କହିଲେ ଯେ—"ସେଦିନ ଉଚ୍ଛୃଙ୍ଖଳ ଯୁବକମାନେ କରତାଳି ମାଡ଼ କରିବା ଫଳରେ ଶତକଡ଼ା ଅନେଶତ ଜଣଙ୍କର ହାତର ଚର୍ମ ଉଲୁରି ଯାଇଥିଲା ।" ଯୁବକମାନଙ୍କର ହାତର ଦୁର୍ଦ୍ଦଶାକୁ ଲକ୍ଷ୍ୟ କରି ବୟୋଜ୍ୟେଷ୍ଠା ନାରୀ କବି ଶ୍ରୀମତୀ ରସଲା ଦେବୀ ଦୁଇଦିନ ପର୍ଯ୍ୟନ୍ତ କୁଆଡ଼େ ନିଜ ଘରେ କାନ୍ଦିଥିଲେ ।

ଏ ଜୟନ୍ତୀ ପରେ ପରେ ସହରରେ ଆହୁରି ବହୁତ ଅଦ୍ଭୁତ କିସମର କାର୍ଯ୍ୟ ହୋଇଯାଇଥିଲା । ସେ ସବୁ କାର୍ଯ୍ୟମାନଙ୍କ ମଧ୍ୟରେ ସ୍ମରଣିକା ଉଦ୍ଘାଟନ, କବିତା ପୁସ୍ତକ ଉନ୍ମୋଚନ ଇତ୍ୟାଦି ବେଶି ଦୃଷ୍ଟି ଆକର୍ଷକ ହୋଇଥିଲା । ଧନପତି ମଧୁ ମହାପାତ୍ରଙ୍କର ଲୁହା-ଲକଡ଼ ବ୍ୟବସାୟ ପାଇଁ ଯେଉଁ ଛବି ବହୁଳ ଦରଦାମ ତାଲିକା କରାଯାଇଥିଲା, ତାକୁ ମଧ୍ୟ ସାହିତ୍ୟ ପୁସ୍ତକ ଭାବେ ଦିନେ ସନ୍ଧ୍ୟାରେ କେତେଜଣ ସାହିତ୍ୟିକ ମିଶି ଉଦ୍ଘାଟନ କରିଥିଲେ । ଗ୍ରୋମୋର-ଫୁଡ଼ କମ୍ପାନୀଙ୍କର ସାର, ବିହନ ଓ ମଞ୍ଜି ତାଲିକାକୁ ଉତ୍କୃଷ୍ଟ ପ୍ରବନ୍ଧ

ଭାବେ ଗ୍ରହଣ କରାଯାଇ ଗ୍ରୋମୋରଫୁଡ଼ କମ୍ପାନୀର ଡିରେକ୍ଟର ବାବୁ ଅଶ୍ୱ ଘୋଷଙ୍କୁ ବାରଟିକିଆ ଗଜରା ଫୁଲମାଳ ଉପଢ଼ୌକନ ଦିଆଯାଇଥିଲା ।

ପାଞ୍ଚଦିନ ଏହିପରି ଭାବେ କାମ ଚାଲିବା ଫଳରେ ବହୁଲୋକ ଉତ୍ସାହିତ ହୋଇପଡ଼ିଲେ । ଏହାପରେ ସାରା ସହରର ପ୍ରତ୍ୟେକ ଶ୍ରେଣୀର ଷାଠିଏ ବର୍ଷିଆ ଲୋକେ ନିଜ ନିଜର ଜୟନ୍ତୀ କରିବାକୁ ଆଗ୍ରହୀ ହେଲେ । ଦୈନିକ ଜଣେ ଦୁଇଜଣଙ୍କର ଜୟନ୍ତୀ କାର୍ଯ୍ୟକ୍ରମ ଉଦ୍‌ଘାଟନ କରିବା ହେତୁ ଶିକ୍ଷାମନ୍ତ୍ରୀଙ୍କୁ କେହି କେହି 'ଜୟନ୍ତୀ ମନ୍ତ୍ରୀ' ବୋଲି କହିଲେ । ଏହାର କିଛିଦିନ ପରେ ସହରରେ ଆଉ ଏକ ଅସମ୍ଭବ ପ୍ରକାରର ଜୟନ୍ତୀ କାର୍ଯ୍ୟକ୍ରମ ଆରମ୍ଭ କରାଗଲା । ଦିନେ ସମ୍ବାଦପତ୍ରରେ ପଢ଼ିବାକୁ ମିଳିଲା—

ଯୋଗ ଦିଅନ୍ତୁ ।

ସାଫଲ୍ୟ ମଣ୍ଡିତ କରନ୍ତୁ ।

**ନପୁଂସୀ ଜୟନ୍ତୀ କମିଟିର ବିପୁଳ ସମ୍ବର୍ଦ୍ଧନା ଆୟୋଜନ ।**

'ଉଦ୍ୟୋକ୍ତାମାନେ ଜଣାଇଛନ୍ତି ଯେ ନପୁଂସୀ ସମ୍ବର୍ଦ୍ଧନା ଜୟନ୍ତୀ କମିଟି ତରଫରୁ ବିପୁଳ ଜନ ସମାବେଶରେ ଶ୍ରୀଚନ୍ଦ୍ର ଭବନରେ ଏ ଦେଶର ତିନିଜଣ ବିଶିଷ୍ଟ ରଥୀଙ୍କୁ ସମ୍ମାନିତ କରାଯିବ । ସେ ଦିନ ଉତ୍ସବରେ ଏ ଦେଶର ପ୍ରାପ୍ତ ତିନିଶହ ଲୋକ ଭାଷଣ ଦେବେ, ଏବଂ ଏହି ଉତ୍ସବରେ ସହରର ସମସ୍ତ ବୁଦ୍ଧିଜୀବୀ, ଲେଖକ, କଳାକାର, ବ୍ୟବସାୟୀ, ଶିଳ୍ପପତି ଇତ୍ୟାଦି ଯୋଗ ଦେବାର ନିର୍ଭର ପ୍ରତିଶ୍ରୁତି ଦେଇଛନ୍ତି । ନୃତ୍ୟ ଗୀତର ବିପୁଳ ଆୟୋଜନ ମଧ୍ୟରେ ଏହି କାର୍ଯ୍ୟକ୍ରମ ସନ୍ଧ୍ୟା ଛ'ଟାରୁ ଆରମ୍ଭ ହୋଇ ରାତି ବାରଟା ପର୍ଯ୍ୟନ୍ତ ଚାଲିବ । ଏ କାର୍ଯ୍ୟକ୍ରମ ପରେ, ମହାପ୍ରସାଦ ସେବନ, ଜଳପାନ ଇତ୍ୟାଦିର ସୁବନ୍ଦୋବସ୍ତ କରାଯାଇଛି । ଦୂରରୁ ଆଗତ ଅତିଥିମାନଙ୍କ ପାଇଁ ହୋଟେଲ, ପାନ୍ଥଶାଳା, ଡାକବଙ୍ଗଳା ଇତ୍ୟାଦି ସଂରକ୍ଷିତ ହୋଇଅଛି । ବିନା ପଇସାରେ ଏପରି ସୁଯୋଗ ହରାଇବା ଉଚିତ

ନୁହେଁ । ମହିଳାମାନଙ୍କ ପାଇଁ ସଭାଗୃହର ବାମ ପାଖର ସମସ୍ତ ଚେୟାର ସଂରକ୍ଷିତ ହୋଇ ରଖାଯାଇଛି । ଭିଡ଼ ଓ ଠେଲାପେଲାରୁ ରକ୍ଷା ପାଇବା ପାଇଁ ଅପରାହ୍ଣ ତିନିଟାରୁ ଆସି ସୁବିଧା ସ୍ଥାନ ଦେଖି ବସିଯାଆନ୍ତୁ । ଶକ୍ତିଶାଳୀ ଡାକବାଜ ଯନ୍ତ୍ରଦ୍ୱାରା ବକ୍ତାମାନଙ୍କର ଭାଷଣ ପରିବେଷିତ ହେବ । ଅନୁମାନ କରାଯାଏ, ପ୍ରାୟ ଦୁଇଶହ ଫଟୋଗ୍ରାଫର ଫଟୋ ଉଠାଇବା ପାଇଁ ଆସିବେ । ଫଟୋଗ୍ରାଫର-ମାନଙ୍କର ଫଟୋ ଉଠା ଆଲୋକର ଉତ୍ପାତରୁ ରକ୍ଷା ପାଇବା ପାଇଁ ନେଳି ଚଷମା ବ୍ୟବହାର କରି ଆସିବା ଉଚିତ । ମହିଳାମାନେ କାଳି ଚଷମା ବ୍ୟବହାର କରି ଆସିଲେ ଭଲ ହେବ ବୋଲି ବିଶେଷଜ୍ଞମାନେ ମତ ଦେଇଛନ୍ତି । ଆଶା ଓ ବିଶ୍ୱାସ ସହରର ଭଦ୍ରବ୍ୟକ୍ତି, ଭଦ୍ର ମହିଳାମାନେ ଯଦି ଏ ସୁଯୋଗ ହରାଇ ଦିଅନ୍ତି, ତାହେଲେ ପଛରେ ନିଶ୍ଚୟ ପସ୍ତାଇବେ ।'

ଏ ସମ୍ବାଦ ସମ୍ବାଦପତ୍ରରେ ପ୍ରକାଶିତ ହେବା ପରେ, ଏହାକୁ ପଢ଼ି ବହୁ ଲୋକ ସ୍ଥାନେ ସ୍ଥାନେ ଏହି ଜୟନ୍ତୀ ବିଷୟରେ ଆଲୋଚନା କରିବାକୁ ଲାଗିଲେ । ପାନ ଦୋକାନ, ଚା' ଦୋକାନ, ହୋଟେଲ, ରେଷ୍ଟୁରାଣ୍ଟ, ସିନେମାହାଉସ, ସ୍କୁଲ, କଲେଜ ବିଭିନ୍ନ ପାର୍କମାନଙ୍କରେ ଏ ବିଷୟରେ ବିଶେଷ ଚର୍ଚ୍ଚା ହେଉଥିଲା । କେହି କେହି ପୁରୁଖା ଲୋକ ମତ ଦେଉଥିଲେ—"ତ୍ରୟୀ ଜୟନ୍ତୀ କମିଟିର ଚେୟାରମ୍ୟାନ ଆମେରିକାରୁ ଆସିଛନ୍ତି ।" ତରୁଣ ଅଧ୍ୟାପକମାନେ କହୁଥିଲେ—"ତ୍ରୟୀ ଜୟନ୍ତୀ କମିଟିର ଚେୟାରମ୍ୟାନ କୁଆଡ଼େ ଛ'ଟା ବିଷୟରେ ଅଧ୍ୟାପକ ।" ଗବେଷକ ପଣ୍ଡିତ ଆର୍ଯ୍ୟନାରାୟଣ ଦାଶ କହିଥିଲେ—"ତ୍ରୟୀ ଜୟନ୍ତୀ କମିଟିର ଚେୟାରମ୍ୟାନ ବନାରସରୁ ସଂସ୍କୃତରେ ଏପରି ପାଣ୍ଡିତ୍ୟ ହାସଲ କରିଛନ୍ତି ଯେ ତାଙ୍କ ଜ୍ଞାନ ମାପିବା ପାଇଁ ଏଠାରେ ଆଦୌ ଯନ୍ତ୍ର ନାହିଁ ।" କେତେକ ଉଚ୍ଛୃଙ୍ଖଳ ଯୁବକ ମତ ଦେଇଥିଲେ—"ତ୍ରୟୀ ଜୟନ୍ତୀ କମିଟିର ଚେୟାରମ୍ୟାନ ହେଉଛନ୍ତି ରୁଷିଆର ଲୋକ । ସେ ଜୀବନର ପଇଁତିରିଶ ବର୍ଷ ମସ୍କୋ ୟୁନିଭର୍ସିଟିରେ ପଢ଼ି ପଢ଼ି ବିତାଇ ଦେଇଛନ୍ତି ।" ତରୁଣ ଗାଳ୍ପିକମାନେ କହୁଥିଲେ—"ତ୍ରୟୀ ଜୟନ୍ତୀ

କମିଟିର ଚେୟାରମ୍ୟାନ ଏପରି ଗଳ୍ପ ଲେଖନ୍ତି ଯେ ତାକୁ ପୃଥିବୀରେ କେହି ବୁଝି ପାରନ୍ତି ନାହିଁ । ତାଙ୍କ ଗଳ୍ପ ଉପରେ କୁଆଡ଼େ ପଦ୍ମଶ୍ରୀ ଅଚ୍ଛିନ୍ନା ନନ୍ଦ ରାଉତରାୟ ଏବେ ଗବେଷଣା ଚଳାଇଛନ୍ତି ।,,

ସାରା ସହରରେ ତ୍ରୟୀ ଜୟନ୍ତୀ କମିଟି ଏକ ବିସ୍ମୟ ସୃଷ୍ଟି କରିଥିଲା । ତ୍ରୟୀ ଜୟନ୍ତୀ କମିଟି ତରଫରୁ ନିମନ୍ତ୍ରଣ ପତ୍ର ଛପାଯାଇ ସାରା ସହରର ପାଞ୍ଚହଜାର ଲୋକଙ୍କ ମଧ୍ୟରେ ବଣ୍ଟାଯାଇ-ଥିଲା । ଏଇ ନିମନ୍ତ୍ରଣ ପତ୍ରରେ ଲେଖାଥିଲା ଯେ—

ପ୍ରିୟ ମହାଶୟ,

ଆସନ୍ତା ୧୩ ତାରିଖ ରବିବାର ସନ୍ଧ୍ୟା ୭ ଘଣ୍ଟା ସମୟରେ ତ୍ରୟୀ ଜୟନ୍ତୀ କମିଟି ତରଫରୁ ଏ ଦେଶର ପ୍ରଖ୍ୟାତନାମା ବୟୋଜ୍ୟେଷ୍ଠ ତୁଙ୍ଗରଥୀ ତିନିଜଣଙ୍କୁ ମାନପତ୍ର ଦିଆଯାଇ ସମ୍ମାନିତ ଦିଆଯିବ ଏବଂ ଏହି ତିନିରଥୀଙ୍କର ଜୀବନୀ ସମ୍ପର୍କରେ ନିମ୍ନଲିଖିତ କାର୍ଯ୍ୟସୂଚୀ ଅନୁଯାୟୀ ଆଲୋଚନା କରାଯିବ । ଆପଣ ଏହି କାର୍ଯ୍ୟ-କ୍ରମରେ ମୁଖ୍ୟବକ୍ତା, କିମ୍ବା ପ୍ରଧାନ ଅତିଥି, କିମ୍ବା ପ୍ରଧାନ ବକ୍ତା, କିମ୍ବା ପ୍ରଯୋଜକ, କିମ୍ବା ସଂଯୋଜକ, କିମ୍ବା ସଙ୍ଗଠକ, କିମ୍ବା ସଭାପତି ରୂପେ ଯୋଗ ଦେବାପାଇଁ ପ୍ରସ୍ତୁତ ହୋଇ ଆସିଥିବେ । ଆପଣ ଉକ୍ତ ପଦବୀମାନଙ୍କ ମଧ୍ୟରୁ କେଉଁଟି ଗ୍ରହଣ କରିବେ, ସଭା ଆରମ୍ଭର ଏକ ମିନିଟ ଆଗରୁ ତାହା ଆପଣଙ୍କୁ ଜଣାଇ ଦିଆଯିବ । ଆବଶ୍ୟକ ପଡ଼ିଲେ, ଆପଣଙ୍କୁ ମଧ୍ୟ ସମ୍ବର୍ଦ୍ଧନା ଦିଆଯାଇପାରେ । ସେଥିପାଇଁ ଆପଣ 'ରେଡ଼ି' ହୋଇଥିବେ ବୋଲି ଆମେ ବିଶ୍ୱାସ କରୁଛୁ । ସଙ୍ଗରେ ଆପଣଙ୍କର ବନ୍ଧୁବାନ୍ଧବ ପିଲାକବିଲାଙ୍କୁ ନେଇଆସି ସଭାଗୃହକୁ ଭରପୂର କରାଇବେ ବୋଲି ଆମେ ଅନୁରୋଧ କରୁଛୁ । ଅଧିକ ପରିମାଣରେ ଯଦି ମହିଳାମାନଙ୍କୁ ଯୋଗାଡ଼ କରି ଆଣିପାରନ୍ତି ତାହେଲେ ଆହୁରି ସୁନ୍ଦର ହୁଅନ୍ତା । ଆପଣଙ୍କର ପୁଅ, ଝିଅ ଯଦି ଗୀତ ଗାଉଥିବେ ତାଙ୍କୁ ସାଙ୍ଗରେ ଆଣିଲେ, ଆମେ ଏଠାରେ ତାଙ୍କୁ ପୁରସ୍କୃତ କରିବୁ । ଆଖିଧରା ରୋଗ ବ୍ୟାପୁଥିବା ସମୟରେ ଯଦି ସେମାନଙ୍କର ଆଖି ଧରିଥାଏ, ତାହେଲେ ତାଙ୍କୁ ସଙ୍ଗରେ ନ ଆଣି ଜୟନ୍ତୀ

କାର୍ଯ୍ୟକ୍ରମର ଦିନକ ପୂର୍ବରୁ ସେମାନଙ୍କ ନାମ ଏକ ଚିଟା କାଗଜରେ ଲେଖି ପଠାଇଦେଲେ ଆମେ ସେମାନଙ୍କ ନାମରେ ପୁରସ୍କାର ଘୋଷଣା କରି, ପୁରସ୍କାର ନେଇ ଆପଣଙ୍କ ଘରେ ଦେଇ ଆସିବୁ । ଆପଣଙ୍କ ସ୍ତ୍ରୀ ଯଦି ଅଧ୍ୟାପିକା ହୋଇଥାନ୍ତି, ଆମେ ତାଙ୍କୁ ବକ୍ତା ଭାବରେ ଚାନ୍ସ ଦେବୁ ।

ନିର୍ଘଣ୍ଟ ସମୟର ଦୁଇଘଣ୍ଟା ପୂର୍ବରୁ ଆସିବେ—ମହାପ୍ରସାଦ ସେବନ ପରେ ଏଠାରୁ ଯିବେ । ଆମ ଅନୁଷ୍ଠାନ କାହାଠାରୁ କୌଣସି ଚାନ୍ଦା ଗ୍ରହଣ କରେନାହିଁ; କିନ୍ତୁ ବ୍ୟକ୍ତିଗତ ଭାବରେ ଆପଣ ଯଦି କିଛି ସାହାଯ୍ୟ କରିବାକୁ ଚାହାନ୍ତି, ତା'ହେଲେ ଆମେ ଖୁବ୍ ସତର୍କର ସହିତ ତାହା ଅତି ଗୋପନରେ ଏବଂ ବିନା ରସିଦରେ ଗ୍ରହଣ କରିବୁ । ମନ୍ତ୍ରୀଙ୍କ କହିବା ପୂର୍ବରୁ ଆପଣଙ୍କୁ ଭାଷଣ ଦେବାପାଇଁ ଚାନ୍ସ ଦିଆଯିବ । ଆମେ ଆପଣଙ୍କୁ ସଠିକ ଜବାବ ଦେଉଛୁ ଯେ, ଆପଣଙ୍କ ଭାଷଣ ନିଶ୍ଚୟ ମନ୍ତ୍ରୀ ମହୋଦୟ ଶୁଣିବାକୁ ପାଇବେ । ଦୟାକରି ଏ କାର୍ଯ୍ୟକ୍ରମରେ ଯୋଗଦେଇ ଏ ଦେଶର ଏହି ତୁଙ୍ଗ ତିନରଥୀଙ୍କୁ ତାଙ୍କ ଜୀବିତ କାଳ ମଧ୍ୟରେ ତାଙ୍କୁ ସମ୍ମାନିତ କରିଯାନ୍ତୁ ।

ନିବେଦକ
ତ୍ରୟୀ ସମ୍ବର୍ଦ୍ଧନା ଜୟନ୍ତୀ କମିଟି

## କାର୍ଯ୍ୟସୂଚୀ

୧ । ସନ୍ଧ୍ୟା ଘ ୫ ଣ୍ଟା ସମୟରେ ଆପଣମାନେ ଆସି ଆସନ ଗ୍ରହଣ କରିବେ ।

୨ । ସନ୍ଧ୍ୟା ଘ ୬ ଣ୍ଟାରେ ତିନରଥୀ ମଞ୍ଚ ଉପରକୁ ଉଠିବେ ।

୩ । ପ୍ରାରମ୍ଭିକ ସଙ୍ଗୀତ—ସନ୍ଧ୍ୟା ୬ଟା ୩ ମିନିଟରେ ।

୪ । ପୁଷ୍ପମାଲ୍ୟ ଗ୍ରହଣ—ସନ୍ଧ୍ୟା ୬ଟା ୨ ମିନିଟ ।

୫ । ମାନପତ୍ର ପଠନ—ସନ୍ଧ୍ୟା ୬ଟା ୭ ମିନିଟ ।

୬ । ରଥୀ ତ୍ରୟଙ୍କୁ ମନ୍ତ୍ରୀ ମହାଶୟ ଖଣ୍ଡେ ଖଣ୍ଡେ ଚଦର ଭେଟି-ଦେବେ—ସନ୍ଧ୍ୟା ୬ଟା ୮ ମିନିଟ୍ ।

୭। ଭୂଷଣ ସୁରୁ ହେବ—ସନ୍ଧ୍ୟା ୭ଟା ୯ ମିନଟରୁ ରାତ୍ର ଏଗାରଟା ।

୮। ନୃତ୍ୟ, ଗୀତ, ବାଦ୍ୟ, ଓ କରତାଳ କାର୍ଯ୍ୟକ୍ରମ ରାତ୍ର ୧୧ଟାରୁ ୧୨ଟା ୧୩ ମିନଟ ପର୍ଯ୍ୟନ୍ତ ।

୯। ମହାପ୍ରସାଦ ସେବନ—୧୨ଟା ୧୩ ମିନଟରୁ ବାରଟା ୩୦ ମିନଟ ପର୍ଯ୍ୟନ୍ତ ।

୧୦। ଏହାପରେ ସର୍ବଗୃହକୁ ଅନ୍ଧକାର କରି ଦିଆଯିବ ।

(ବି:ଦ୍ର:—ଦୟାକରି ଏ ନିମନ୍ତ୍ରଣ ପତ୍ର ପଢ଼ି ଆପଣ ଏହାର ସମସ୍ତ ତଥ୍ୟ ଗୋପନ ରଖିବେ । ତା’ ନହେଲେ, ଆପଣ ବକ୍ତା ଭାବେ ଯୋଗ ଦେଉଥିବାରୁ ବହୁ ଲୋକ ଆପଣଙ୍କୁ ହିଂସା କରିପାରନ୍ତି ।)

ସହରର ପ୍ରତ୍ୟେକ ବୁଦ୍ଧିଜୀବୀ ସମ୍ବର୍ଦ୍ଧନାର ଆଠଦିନ ପୂର୍ବରୁ ଏହିପରି ଗୋଟିଏ ଗୋଟିଏ ନିମନ୍ତ୍ରଣ ପତ୍ର ପାଇଥିଲେ । ଉଦ୍ୟୋକ୍ତାଙ୍କ ଅନୁରୋଧ କ୍ରମେ ପାଇଥିବା ନିମନ୍ତ୍ରଣ ପତ୍ରର ବିଷୟବସ୍ତୁ ସେମାନେ ଗୋପନ ରଖିଥିଲେ । ସହରର କାନ୍ଥବାଡ଼ରେ ଖୁବ୍ ବଡ ବଡ଼ ପ୍ରଚାରପତ୍ର ଓ ପ୍ରାଚୀରପତ୍ର ମରାଯାଇଥିଲା । ବେତାର କେନ୍ଦ୍ରରେ ଆଞ୍ଚଳିକ ସମ୍ବାଦ ପରିବେଷଣ ସମୟରେ ଏପରି କାର୍ଯ୍ୟକ୍ରମ ହେବାକୁ ଯାଉଥିବା କଥା ଘୋଷଣା କରାଯାଇଥିଲା । ଜନଗହଳି ଛକମାନଙ୍କରେ ଡାକବାଜି ଯନ୍ତ୍ରଦ୍ୱାରା ସାଧାରଣଙ୍କ ଅବଗତି ପାଇଁ ପ୍ରତି ସନ୍ଧ୍ୟାରେ ଏହା ଜଣାଇ ଦିଆଯାଇଥିଲା । ଏପରି ଏକ ଅଦ୍ଭୁତ ଜୟନ୍ତୀ ଦେଖିବା ପାଇଁ, ସାରା ସହରର ଲୋକେ ଉତ୍କଣ୍ଠିତ ହୋଇ ଜୟନ୍ତୀ ଦିବସକୁ ଅପେକ୍ଷା କରି ରହିଥିଲେ, କିନ୍ତୁ କେଉଁ ତିନିଜଣ ରଥୀ ସମ୍ବର୍ଦ୍ଧିତ ହେବେ, ସେ କଥା ସହରର କୌଣସି ବ୍ୟକ୍ତି ଜାଣି ନଥିଲେ । ତେଣୁ ବହୁ ବୟସ୍କ ଗୁଣୀ ପଣ୍ଡିତମାନେ ମନେ କରୁଥିଲେ ଯେ—ତାଙ୍କୁ ହିଁ ସମ୍ବର୍ଦ୍ଧିତ କରାଯିବ ସମ୍ଭବ ।

ଜୟନ୍ତୀ ଦିବସ ନିକଟ ହୋଇ ଆସିଲା । ପ୍ରସ୍ତୁତି କାର୍ଯ୍ୟ ଜୋରସୋରରେ ଆରମ୍ଭ ହୋଇଗଲା । ବୁଦ୍ଧିଜୀବୀମାନେ ପରସ୍ପର ଦଉଡ଼ା ଦଉଡ଼ି କରି ନିଜ ନିଜ ଭିତରେ ଏ ବିଷୟରେ ଆଲୋଚନା

କରିବାକୁ ଲାଗିଲେ । ଜୟନ୍ତୀ କମିଟିର ଚେୟାରମ୍ୟାନ ଅତି କାର୍ଯ୍ୟବ୍ୟସ୍ତ ଲୋକ ହୋଇଥିବାରୁ ସେ କାହାରି ସହିତ ସାକ୍ଷାତ କରିପାରୁନଥିଲେ ଓ ବହୁ ଲୋକ ତାଙ୍କୁ ଦେଖିବା ପାଇଁ ଚେଷ୍ଟା କରି ମଧ୍ୟ ବ୍ୟର୍ଥ ହୋଇ ଫେରି ଆସିଥିଲେ; କିନ୍ତୁ ସମସ୍ତ କାର୍ଯ୍ୟ ପୂର୍ବଠାରୁ ଆହୁରି ବ୍ୟାପକ ଭାବରେ ପ୍ରସାର ଲାଭ କରିଥିଲା ।

ଜୟନ୍ତୀ ଦିନ ଅପରାହ୍ନ ତିନିଟା ସମୟରୁ ସଭାଗୃହ ନିକଟରେ ଲୋକ ଗହଳି ଆରମ୍ଭ ହୋଇଗଲା । ବୁଦ୍ଧିଜୀବୀମାନେ ଦଳ ଦଳ ଠିଆ-ହୋଇ ପରସ୍ପର ମଧ୍ୟରେ ଆଲୋଚନାରତ ରହିଲେ । କେଉଁମାନେ ସମ୍ବର୍ଦ୍ଧିତ ହେବେ, କେହି ନ ଜାଣିଲେ ମଧ୍ୟ ଲୋକମାନେ କେବଳ ଜୟନ୍ତୀ କମିଟିର ଚେୟାରମ୍ୟାନଙ୍କୁ ଦେଖିବା ପାଇଁ ଆଗ୍ରହୀ ଥିଲାପରି ମନେ ହେଉଥିଲା । ସନ୍ଧ୍ୟା ୫ଟା ସୁଦ୍ଧା ଚେୟାରମ୍ୟାନ ମହାଶୟ ସଭାଗୃହ ନିକଟକୁ ଆସିନଥିଲେ; କିନ୍ତୁ ଏତେବେଳକୁ ସଭାଗୃହ ଜନଗହଳରେ ଭରପୂର ହୋଇ ଉଠିଥିଲା । ବହୁଲୋକ ବସିବାର ସୁବିଧା ନପାଇ ସଭାଗୃହର ବାରଣ୍ଡାରେ ଠିଆହୋଇଥିଲେ । ପାଞ୍ଚଟା ପଇଁତିରିଶ ମିନିଟରେ ସମବେତ ଜନତାଙ୍କ ମଧ୍ୟରେ ଏକ ଗୁଞ୍ଜରଣ ଖେଳିଗଲା— "ଚେୟାରମ୍ୟାନ ଆସୁଛନ୍ତି— ଚେୟାରମ୍ୟାନ ଆସୁଛନ୍ତି ।" ସଭାଗୃହର ଦ୍ୱାରଦେଶରେ ଏକ ନୀଳ ରଙ୍ଗର ଆମ୍ବାସଡ଼ର କାର୍ ଆସି ଅଟକିଗଲା । କାର୍ ଭିତରୁ ଜଣେ ଦୀର୍ଘକାୟ ବଳିଷ୍ଠ ଦେହଧାରୀ ସ୍ୱଦେଶୀ ପୋଷାକ ପରିହିତକାରୀ ସୁଶ୍ରୀ ପଚିଶବର୍ଷ ବୟସ୍କ ଭଦ୍ରବ୍ୟକ୍ତି ପଦାକୁ ଆସିଲେ । ହସ ହସ ମୁହଁରେ ହାତଯୋଡ଼ି ସେ ସମସ୍ତଙ୍କୁ ସ୍ୱାଗତ ସମ୍ଭାଷଣ ଜଣାଇଲେ । ବହୁଲୋକ ତାଙ୍କୁ ପ୍ରଶଂସ ଦୃଷ୍ଟିରେ ଚାହିଁ ତାଙ୍କ ସହିତ ବାକ୍ୟାଳାପ କରିବା ପାଇଁ ବ୍ୟସ୍ତ ଥିଲାପରି ମନେ ହେଉଥିଲା; କିନ୍ତୁ ଚେୟାରମ୍ୟାନ ମହାଶୟ ନିଜେ ଅତି କାର୍ଯ୍ୟବ୍ୟସ୍ତ ଥିବାପରି ଅଭିନୟ କରି ସଭାଗୃହ ଭିତରକୁ ଆଗେଇ ଗଲେ । ସଙ୍ଗେ ସଙ୍ଗେ ସଭାଗୃହର ସମସ୍ତ ଡାକବାଜି ଯନ୍ତ୍ର ଗାଁ ଗାଁ ହୋଇ ଶବ୍ଦ କରି ଉଠିଲା । ସଭାଗୃହ ସମ୍ମୁଖରେ ଯେଉଁ ମଞ୍ଚ ଥିଲା, ଚେୟାରମ୍ୟାନ ମହାଶୟ ତହିଁ ଉପରେ ଯୋଡ଼ି ହାତରେ ଠିଆହୋଇ ନିଜ ବିନୟ ଭାବର ଦୃଷ୍ଟାନ୍ତ ପ୍ରମାଣ ଦେଲେ ଓ ମାଇକ୍ ସମ୍ମୁଖରେ ଠିଆହୋଇ କହିଲେ—

ବନ୍ଧୁଗଣ !

ଆପଣମାନେ ଧୈର୍ଯ୍ୟର ସହିତ ଏ କାର୍ଯ୍ୟକ୍ରମରେ ଅଂଶ ନେବାପାଇଁ ଏଠାକୁ ଆସି ବହୁ ସମୟଧରି ଅପେକ୍ଷା କରିଥିବାରୁ, ଜୟନ୍ତୀ କମିଟି ତରଫରୁ ଏ ନଗଣ୍ୟ ପ୍ରଥମେ ଆପଣଙ୍କୁ ଅଭିନନ୍ଦନ ଜଣାଇବା ସଙ୍ଗେ ସଙ୍ଗେ ନିଜ ହୃଦୟର ଗଭୀର କୃତଜ୍ଞତା ଜ୍ଞାପନ କରୁଅଛି । ମୋ ପଛେ ପଛେ ମାନ୍ୟବର ମନ୍ତ୍ରୀ ମହୋଦୟ ଆସୁଛନ୍ତି । ଆଉ ପ୍ରାୟ ଏକ ମିନିଟ ପରେ ଏହି ମଞ୍ଚ ଉପରେ ଆପଣମାନେ ତାଙ୍କୁ ଦେଖିବାକୁ ପାଇବେ । ଆଜ ଯେଉଁ ରଥିରଥୀଙ୍କୁ ସମ୍ବର୍ଦ୍ଧିତ କରାଯିବ, ସେମାନେ ମଧ୍ୟ ଆସିଗଲେଣି । ଏ ଦେଶର ସେହିପରି ସୁଯୋଗ୍ୟ ରଥିରଥୀଙ୍କୁ ସମ୍ବର୍ଦ୍ଧିତ କରିବା ଏକ ଗୌରବ ବୋଲି ମୋ ସହିତ ଆପଣମାନେ ମଧ୍ୟ ଅନୁଭବ କରିବେ । ମନ୍ତ୍ରୀ ମହୋଦୟ ଆସିଗଲେ ସମ୍ବର୍ଦ୍ଧିତ ରଥୀଦ୍ୱୟଙ୍କର ପରିଚୟ ଆପଣମାନଙ୍କ ଆଗରେ ଦିଆଯିବ । ବହୁ ବକ୍ତା ଏହି କାର୍ଯ୍ୟକ୍ରମରେ ଅଂଶଗ୍ରହଣ କରିବାର ଅବକାଶ ରହିଛି । ଏଥିପାଇଁ ମୁଁ ଆପଣମାନଙ୍କର ଧୈର୍ଯ୍ୟ ଓ ସହଯୋଗ କାମନା କରେ । ସଭା ପରେ ନୃତ୍ୟଗୀତର ବ୍ୟାପକ କାର୍ଯ୍ୟକ୍ରମ ରହିଛି । ଏ ଦେଶର ଖ୍ୟାତନାମା ସଙ୍ଗୀତଶିଳ୍ପୀ ଓ ନୃତ୍ୟ-ଶିଳ୍ପୀଗଣ ଏଥିରେ ଅଂଶ ଗ୍ରହଣ କରିବେ । ସଙ୍ଗୀତ ଓ ନୃତ୍ୟ କାର୍ଯ୍ୟକ୍ରମ ପରେ ଆଉ ଏକ ସୁସମ୍ବାଦ ଆପଣମାନଙ୍କ ପାଇଁ ରହିଛି । ସବୁକାର୍ଯ୍ୟ ଶେଷରେ, ଏଠାରେ ଯେତେଲୋକ ଆପଣମାନେ ରହିଛନ୍ତି, ସମସ୍ତଙ୍କ ପାଇଁ ମହାପ୍ରସାଦ ସେବନର ବ୍ୟବସ୍ଥା କରା-ଯାଇଛି । ତେଣୁ ଆପଣମାନେ ଧୀରସ୍ଥିର ହୋଇ ଆଜକାର ସଭାକୁ ସାଫଲ୍ୟମଣ୍ଡିତ କରିବା ପାଇଁ ମୁଁ ନିବେଦନ କରୁଛି । ଜୟହିନ୍ଦ ।

ଚେୟାରମ୍ୟାନ ମହାଶୟଙ୍କ ଶେଷ ବକ୍ତବ୍ୟ ସମୟରେ ମନ୍ତ୍ରୀ ମହାଶୟ ସଭାଗୃହ ମଧ୍ୟରେ ପ୍ରବେଶ କଲେ । ରାଙ୍କୁ ଦେଖି ବିରାଟ ଜୟ ଧ୍ୱନି ଉଠିଲା ପରେ, ମନ୍ତ୍ରୀଙ୍କୁ ଦେଖି ସମବେତ ଜନତା ଠିଆହୋଇ ଲୋଲୁପ-ଦୃଷ୍ଟିରେ ତାଙ୍କୁ ଚାହିଁ ରହିଲେ । ଅତି ଉତ୍ସାହରେ ଆଉ କେତେଜଣ

ଆଜ୍ଞା ! ଆଜ୍ଞା !—କହି ମନ୍ତ୍ରୀଙ୍କ ପଛରେ ଚାଲିଲେ । ଚେୟାରମ୍ୟାନ ମହାଶୟ ସଭାମଞ୍ଚ ଉପରୁ ଓହ୍ଲାଇ ଆସି ମନ୍ତ୍ରୀଙ୍କୁ ପାଛୋଟି ନେଇ ସଭା ମଞ୍ଚର ମଧ୍ୟଭାଗରେ ଥିବା ଚେୟାରରେ ବସାଇଦେଲେ । ଏହାପରେ ଚେୟାରମ୍ୟାନ ମହାଶୟ, ଡାକବାଜଯନ୍ତ୍ର ଆଗରେ ଠିଆହୋଇ ଘୋଷଣା କରି କହିଲେ—

ବନ୍ଧୁଗଣ !

ଆଜି ବଡ଼ ସୌଭାଗ୍ୟର ଦିନ । ଆମର ଅନୁରୋଧ ରକ୍ଷାକରି ମାନ୍ୟବର ମନ୍ତ୍ରୀ ମହୋଦୟ ଏ ସମ୍ବର୍ଦ୍ଧନା ଉତ୍ସବ ଉଦ୍‌ଘାଟନ କରିବା ପାଇଁ ଏଠାରେ ଆସି ଉପସ୍ଥିତ ହୋଇଗଲେଣି । ଆଜିକାର ସଭାରେ ସଭାପତିତ୍ୱ କରିବେ—ଏ ଦେଶର ବୟୋଜ୍ୟେଷ୍ଠ ସାହିତ୍ୟିକ, ରାଜନୀତିଜ୍ଞ, ସମାଲୋଚକ, କବି, ପ୍ରାବନ୍ଧିକ, ଶିଶୁସାହିତ୍ୟଲେଖକ ଶ୍ରୀଯୁକ୍ତ ହାଣ୍ଡୁରାମ ସାହୁ । ମୁଖ୍ୟ ଅତିଥି ଭାବରେ ଯୋଗଦେବେ—ଅବସରପ୍ରାପ୍ତ ଆଇ:ଏ:ଏସ୍: ଶ୍ରୀଯୁକ୍ତ ମନରାମ ଜହ୍ନୁରାମଲ୍ଲ ଏବଂ ମୁଖ୍ୟ ବକ୍ତା ଭାବରେ ଯୋଗଦେବେ ବହୁ ଷଦ୍ୱାନରଥୀ । ମାନପତ୍ର ପଠନ କରିବେ ମୋହନମୁରାରି ମହାନ୍ତି, ଗୋପିକା ବଲ୍ଲଭ କାନୁନ୍‌ଗୋ ଓ କୃଷ୍ଣବନ ମହାପାତ୍ର । ସମ୍ବର୍ଦ୍ଧିତ ରଥୀମାନଙ୍କ ପାଇଁ କବିତା ପଢ଼ିବେ ଆନନ୍ଦ ପରମ ଅଧିକାରୀ, ମୋହନମୁରାରି ଜେନା, ନାରାୟଣ ରଥ ମହାପାତ୍ର, ବଂଶୀଫୁଙ୍କା ମିଶ୍ର, ଇତ୍ୟାଦି ଇତ୍ୟାଦି । ସମ୍ବର୍ଦ୍ଧିତ ରଥୀମାନେ ମଧ୍ୟ ସମ୍ମୁଖରେ ଉପସ୍ଥିତ ଅଛନ୍ତି । ସେମାନଙ୍କର ପରିଚୟ ଓ କାର୍ଯ୍ୟାବଳୀ ଅନୁଷ୍ଠାନର ସମ୍ପାଦକ ତାଙ୍କ ବକ୍ତବ୍ୟରେ ପରେ କହିବେ । ସମସ୍ତଙ୍କୁ ବର୍ତ୍ତମାନ ଏ ମଞ୍ଚ ଉପରକୁ ଆସିବା ପାଇଁ ମୁଁ ଅନୁରୋଧ କରୁଛି । ସେମାନେ ଶୀଘ୍ର ଉପରକୁ ଉଠିଆସି ଚୌକି ସବୁ ଦଖଲ କରିନିଅନ୍ତୁ । ଏହାପରେ ଆମର କାର୍ଯ୍ୟକ୍ରମ ଅନୁଯାୟୀ ସମ୍ବର୍ଦ୍ଧନା ଉତ୍ସବ ଆରମ୍ଭ କରାଯିବ ।

ଚେୟାରମ୍ୟାନଙ୍କ ଅନୁରୋଧ ଫଳରେ, ସଭା ମଞ୍ଚ ଉପରେ ସଭାପତି, ମୁଖ୍ୟବକ୍ତା, ପ୍ରଧାନ ଅତିଥି, କବିତା ପାଠକାରୀ, ଯାପାଳି ଜାଳି ସିଏ ସମସ୍ତଙ୍କୁ ଆହ୍ଲାଦିତ କରିବେ—ହେନ୍ତ ସୁଶ୍ରୀ ନାରୀ, ସର୍ବୋପରି

ସମ୍ବର୍ଦ୍ଧିତ ହେବାକୁ ଯାଉଥିବା ରଥୀସମୂହ ଆସନ ଗ୍ରହଣ କଲେ । ଏହି ସମ୍ବର୍ଦ୍ଧିତ ରଥୀସମୂହଙ୍କ ମଧ୍ୟରେ ଦୁଇଜଣ ପୁରୁଷ ଓ ଜଣେ ନାରୀ ଥିଲେ । ମଞ୍ଚ ଉପରେ ଗହଳି ବେଶୀ ହେବାରୁ ଚୌକିର ଅଭାବ ଅନୁଭୂତ ହୋଇଥିଲା । ତଥାପି ଚେୟାରମ୍ୟାନ ମହାଶୟ ନିଜର ତୀକ୍ଷ୍ଣ ବୁଦ୍ଧିବଳରେ ଭଙ୍ଗା ଦଦରା ଯେଉଁ କେତୋଟି ଚୌକି ଲୁଚାଇ-ରଖିଥିଲେ, ତହିଁରେ କାମ ଚଳାଇନେଲେ । ପ୍ରାରମ୍ଭିକ ସଙ୍ଗୀତ ଗାଇଥିଲେ ଶ୍ରୀମତୀ ଭିକାରୁଣୀ ବାଈ । ପ୍ରାରମ୍ଭିକ ସଙ୍ଗୀତ ପରେ ପରେ ସଭା ମଞ୍ଚ ଉପରେ ଥିବା ବରେଣ୍ୟ ରଥୀମାନଙ୍କୁ ଗୋଟିଏ ଗୋଟିଏ ମଲ୍ଲିଫୁଲ ହାର ଦିଆଯାଇଥିଲା । ମନ୍ତ୍ରୀ ମହାଶୟ ତାଙ୍କ ଉଦ୍‌ଘାଟନୀ ବକ୍ତବ୍ୟ ଆରମ୍ଭ କଲେ । କାହାକୁ ସମ୍ବର୍ଦ୍ଧନା ଦିଆଯାଉଛି ଓ କାହିଁକି ସେମାନଙ୍କୁ ସମ୍ବର୍ଦ୍ଧିତ କରାଯାଉଛି—ଏହା ନ ଜାଣିଥିଲେ ମଧ୍ୟ ମନ୍ତ୍ରୀ ମହୋଦୟ ଅନର୍ଗଳ ମାଇକ୍ ଆଗରେ କହି ଚାଲିଲେ । ତାଙ୍କର ବକ୍ତବ୍ୟରେ ଥିଲା···ଦେଶରୁ ଦାରିଦ୍ର୍ୟ ଦୂରୀକରଣ, ବେକାରୀ ନିବାରଣ, କୃଷି ଉତ୍ପାଦନ, ଶିକ୍ଷା ପରିବର୍ଦ୍ଧନ, କର୍ମ ନିଯୁକ୍ତି, ଗୋ-ପ୍ରଜନନ, କୁକ୍କୁଟ ପାଳନ ଇତ୍ୟାଦି ବହୁ ବଡ଼ ବଡ଼ ସମସ୍ୟାଗତ କଥା । ସର୍ବଶେଷରେ ମନ୍ତ୍ରୀ ମହୋଦୟ କହିଥିଲେ—"ଆଜି ଯେଉଁ ତିନିରଥୀଙ୍କୁ ସମ୍ବର୍ଦ୍ଧିତ କରାଯାଉଛି ତାଙ୍କୁ ଯଦି ଆଗରୁ ସମ୍ବର୍ଦ୍ଧନା ଦିଆଯାଇଥାନ୍ତା, ତେବେ ଏ ଦେଶର ଅଶେଷ କଲ୍ୟାଣ ସାଧନ ହୋଇପାରିଥାନ୍ତା ।" ଏହାପରେ ଅନୁଷ୍ଠାନର ସମ୍ପାଦକ ବକ୍ସି ଘଟୋତ୍କଚ ଅଧିକାରୀ ସମ୍ବର୍ଦ୍ଧିତ ରଥୀସମୂହଙ୍କର ପରିଚୟ ଦେବାପାଇଁ ଡାକବାଜି-ଯନ୍ତ୍ର ଆଗରେ ଠିଆହୋଇ କହିଲେ—

ପୂଜ୍ୟ ସଭାପତି ମହାଶୟ, ଉଦ୍‌ଘାଟକ ମନ୍ତ୍ରୀ ମହୋଦୟ, ବରେଣ୍ୟ ପ୍ରଧାନ ଅତିଥି ଓ ସମ୍ମାନିତ ମୁଖ୍ୟବକ୍ତାମଣ୍ଡଳୀ ଏବଂ ମଞ୍ଚ ଉପରେ ଥିବା ଭୁଇଁ ବୁଦ୍ଧିଜୀବୀ ବୃନ୍ଦ ଓ ଉପସ୍ଥିତ ସୁଧୀବୃନ୍ଦ ଓ ମାଆ ଭଉଣୀମାନେ !

ଆଜି ଯେଉଁ ତିନିରଥୀଙ୍କୁ ସମ୍ବର୍ଦ୍ଧିତ କରାଯାଉଛି, ସେମାନେ ଏଇ ମଞ୍ଚ ଉପରେ ଆପଣଙ୍କ ସମ୍ମୁଖରେ ବସିଛନ୍ତି । ବସିଥିବା କ୍ରମ

ଅନୁଯାୟୀ ମୁଁ ସେମାନଙ୍କର ପରିଚୟ ଦେବାପାଇଁ ଆପଣଙ୍କ ସମ୍ମୁଖରେ ଠିଆ ହୋଇଛି । ଯଦିଓ ସେମାନେ ସୁପରିଚିତ ଓ ସୁପରିଚିତା ତଥାପି ଆନୁଷ୍ଠାନିକ ପରମ୍ପରା ଦୃଷ୍ଟିରୁ ଏ ନଗଣ୍ୟ ସେମାନଙ୍କର ପରିଚୟ ଦେବାପାଇଁ ଅପଚେଷ୍ଟା କରିବାର ସାହସ କରୁଛି । ବାମ ପାର୍ଶ୍ୱର ଆରମ୍ଭରେ ଯେଉଁ ବୟୋଜ୍ୟେଷ୍ଠ ରଥୀ ବସିଛନ୍ତି ତାଙ୍କ ନାମ ହେଉଛି ଶ୍ରୀଯୁକ୍ତ ଗଣେଶ ଉଦଣ୍ଡରାୟ । ଉଦଣ୍ଡରାୟ ମହାଶୟ ଜଣେ ଉଦ୍ଭଟଙ୍କର ମଣିଜୀବୀ । ତାଙ୍କ ଜୀବନବ୍ୟାପୀ ସେ ଗାଡ଼ ଗାଡ଼ କାଗଜ ଲେଖି-ଯାଇଛନ୍ତି । ଏ ଦେଶରେ କେହି କାହାର ମହତ୍ତ୍ୱ ବୁଝୁନଥିବାରୁ, ଉଦଣ୍ଡରାୟ ମହାଶୟ ତାଙ୍କ ଲିଖିତ ଏହି ଗାଡ ଗାଡ଼ କାଗଜକୁ ନାଲି ବସ୍ତାନି କରି ତାଙ୍କ ଦୋତାଲା କୋଠା ଛାତ ଉପରେ ଜମା କରିଦେଇଛନ୍ତି । କଚେରି ପିଣ୍ଡାରେ, ଅଦାଲତଖାନା ବାରଣ୍ଡାରେ ରେଜଷ୍ଟ୍ରୀଖାନା ଦୁଆର ମୁହଁରେ ଉଦଣ୍ଡରାୟ ମହାଶୟ ତାଙ୍କ ଜୀବନର ଦୀର୍ଘ ତିରିଶ ବର୍ଷ ବିତାଇ ଦେଇଛନ୍ତି । ମଣିଜୀବୀ ଭାବେ ସେ ଯେଉଁ ଲେଖାମାନ ଲେଖିଯାଇଛନ୍ତି ତାହା ସବୁ ଏସ୍.ଡ଼ି.ଓ., ଜଜ୍ ଇତ୍ୟାଦି ସରକାରୀ କର୍ମଚାରୀମାନଙ୍କଦ୍ୱାରା ବିଶେଷ ଅଦ୍ଭୁତ ହୋଇ ଆସିଥିଲା । ତାଙ୍କୁ ବିଶେଷ ଭାବେ ଚିହ୍ନିବା ପାଇଁ ହେଲେ ଉଦଣ୍ଡରା ମୋହରିର କହିଲେ ସମସ୍ତେ ପ୍ରାୟ ଜାଣିପାରିବେ ।

ଏହି ସମୟରେ ସଭାରେ ମୃଦୁ ହାସ୍ୟରୋଳ ଓ ତାଳିର ଗୁଞ୍ଜରଣ ଶୁଣାଗଲା ।

ଅଳ୍ପ କେତେକଙ୍କର ଦୀର୍ଘ ହସ ମଧ୍ୟ କାନକୁ ଶୁଣାଯାଉଥିଲା । ମନ୍ତ୍ରୀ ମହାଶୟଙ୍କର ମୁହଁ କେଜାଣି କାହିଁକି ଟିକିଏ ପାଉଁଶିଆ ପଡ଼ିଆସୁ-ଥିଲା । କବିତା ପାଠ କରିବାକୁ ବସିଥିବା କବିମାନଙ୍କ ମଧ୍ୟରୁ କେତେକ ନିଜ କବିତା କାଗଜକୁ ଚିରି ଚିରି ଫୋପାଡ଼ି ଦେଇଥିବାର ଲକ୍ଷ୍ୟ କରାଯାଇଥିଲା । ପଛ ବେଞ୍ଚରୁ କେତେଜଣ ଉଠି ପଳାଇଯିବାକୁ ଚେଷ୍ଟା କରୁଥିବାବେଳେ, ଉଦ୍ୟୋକ୍ତାମାନଙ୍କ ତରଫରୁ ଯେଉଁ ସ୍ୱେଚ୍ଛାସେବୀମାନେ ଥିଲେ, ସେମାନେ ସଭାଗୃହର ଦ୍ୱାର ବନ୍ଦ କରି, ତାଲା ପକାଇ ଦେଇ-ଥିବାରୁ ସେମାନଙ୍କର ପଳାଇଯିବା ଚେଷ୍ଟା ବ୍ୟର୍ଥ ହୋଇଥିଲା ।

ସମ୍ପାଦକ ଅଧିକାରୀ ମହାଶୟ ମାଇକ୍ ସମ୍ମୁଖରେ ବିରାଟ ଗର୍ଜନ କରି କହିଲେ—

ବନ୍ଧୁଗଣ !

ଧୈର୍ଯ୍ୟ ହରାନ୍ତୁ ନାହିଁ । ଗଣ୍ଡଗୋଳ ବନ୍ଦ କରନ୍ତୁ । ଧୈର୍ଯ୍ୟର ସହିତ ବସି ମୋତେ ଅନ୍ତତଃ କହିବାପାଇଁ ସୁଯୋଗ ଦେବା ନିମନ୍ତେ ମୁଁ ଆପଣମାନଙ୍କୁ ଅନୁରୋଧ କରୁଛି । ମନ୍ତ୍ରୀଜୀଙ୍କ ଶ୍ରୀଯୁକ୍ତ ଉଦଣ୍ଡରାୟଙ୍କ ପାଖରେ ଯିଏ ବସିଛନ୍ତି ସେ ହେଉଛନ୍ତି—ଶେଖ୍ ଇସମାଇଲ୍ ଖାଁ । ପ୍ରାଚୀନ କାଳରେ ଋଷି ମୁନିମାନେ ଯେପରି ତାଳପତ୍ର ଉପରେ, ଲେଖନୀ ସାହାଯ୍ୟରେ ଏ ଜାତିର ସାହିତ୍ୟକୁ ଲିପିବଦ୍ଧ କରି ଯାଇଥିଲେ ; ସେହିପରି ଶେଖ୍ ଖାଁ ମହାଶୟ କେନ୍ଦୁପତ୍ର ଉପରେ, ଆଜି ଜାତୀୟ ଜୀବନର ଆନନ୍ଦକୁ ଲିପିବଦ୍ଧ କରିବାର ଚେଷ୍ଟା ଚଳାଇଛନ୍ତି । ସାହିତ୍ୟରେ ଯେପରି ଷଡ଼ରସ ରହିଛି, ସେହିପରି ଖାଁ ମହାଶୟଙ୍କ ଅବଦାନରେ କଟୁ, ଅମ୍ଳ ଇତ୍ୟାଦି ରସ ଭରପୂର ଅଛି । ଏ ଦେଶର ଯୁବ ସମାଜକୁ ସେ ଉଦ୍‌ବୁଦ୍ଧ କରିଛନ୍ତି । ତାଙ୍କର ସରଳତମ ପରିଚୟ ହେଉଛି, ଯାହାକି ଆପଣମାନେ ସମସ୍ତେ ଜାଣନ୍ତି, ତାହା ହେଉଛି—ବଡ଼ ବ୍ୟବସାୟୀ ଶ୍ରୀଯୁକ୍ତ ଶେଖ୍ ଇସ୍‌ମାଇଲ୍ ଖାଁ ।

ଏ ବକ୍ତବ୍ୟ ପରେ ପରେ ମନ୍ତ୍ରୀ ମହାଶୟ ରୁମାଲ ପକେଟରୁ ବାହାର କରି ନିଜ ମୁହଁରେ ଦେଲେ । ମଞ୍ଚସ୍ଥ ବକ୍ତାଗଣ ଆଉ ଆଗକୁ ନଚାହିଁ, ମୁହଁ ପୋତି ଟେବୁଲ୍‌କୁ ଚାହିଁ ବସିଲେ । ଉପସ୍ଥିତ ଶ୍ରୋତା ଓ ଦର୍ଶକମାନେ—"ବନ୍ଦ କର—ବାଜେ ବାଜେ" ବୋଲି ଧ୍ୱନିଦେଲେ । ସମ୍ପାଦକ ମହାଶୟ ନିଜ ହାତରେ ହାତପିଟି ମାଇକ ଆଗରେ କହିଲେ—

ବନ୍ଧୁଗଣ !

ଏହା ଏକ ନୂତନ ପଦ୍ଧତିର ସମ୍ବର୍ଦ୍ଧନା । ଯେଉଁମାନଙ୍କୁ ଆପଣ, ସମାଜର ଅବହେଳିତ ଶ୍ରେଣୀ ଭିତରେ ରଖିଛନ୍ତି, ଆଜିର ପ୍ରଗତିଶୀଳ ଯୁଗରେ ଆମେ ସେହିମାନଙ୍କୁ ସମ୍ବର୍ଦ୍ଧିତ କରିବା ପାଇଁ ଅଣ୍ଟାଭିଡ଼ି ଆଗଭର ହୋଇଛୁ । ବଡ଼ ବେପାରୀ ଶେଖ୍ ଇସ୍‌ମାଇଲ୍‌ଙ୍କ

ପାଖରେ ଯେଉଁ ମହାପୁରୀ ମହିଳା ବସିଛନ୍ତି, ତାଙ୍କ ନାମ ହେଉଛି ପ୍ରୀତିଭୂଷିଣୀ ମନୋହାରିଣୀ ଦାସ । ଶ୍ରୀମତୀ ଦାସଙ୍କର ଅବଦାନ କେହି ଭୁଲି ପାରିବେ ନାହିଁ । ଏଠାରେ ଉପସ୍ଥିତ ଥିବା ବହୁ ବୁଦ୍ଧିଜୀବୀ ନିଶ୍ଚୟ ତାଙ୍କୁ ଜାଣିଥିବେ । ଦିନରେ ଜାଣିବା ସମ୍ଭବ ହୋଇ-ନଥିଲେ ମଧ୍ୟ ରାତିରେ ଜାଣିବା ସମ୍ଭବ ହୋଇଥିବ । ସାହିତ୍ୟରେ ଯେପରି ଶୃଙ୍ଗାର ରସ ରହିଛି, ଶ୍ରୀମତୀ ଦାସ ସେହିପରି ଏକ ଜୀବନ୍ତ ଶୃଙ୍ଗାର ରସ । ସେ ଦୀର୍ଘ ତିରିଶ ବର୍ଷ ଧରି, ଏହି ପୁରୁଷ ଜାତିକୁ ଖୁସି କରିବା ଲାଗି, ନିଜର ଦେହ ଦାନ କରିଆସିଛନ୍ତି । ବେଶ୍ୟା, ଗଣିକା ଓ ରୂପଜୀବୀ ବୋଲି କହି ତାଙ୍କୁ ଘୃଣା କରିବାର ଯୁଗ ବର୍ତ୍ତମାନ ବଦଳି ଯାଇଛି । ବେଶ୍ୟା ଶ୍ରୀମତୀ ପ୍ରୀତି ଭୂଷିଣୀ ମନୋହାରିଣୀ ବାଇ କହିଲେ ଆପଣମାନେ ତାଙ୍କୁ ନିଶ୍ଚୟ ଜାଣିପାରିବେ । ନୂତନ ପରମ୍ପରା ଅନୁଯାୟୀ ଏ ଦେଶର ଜଣେ ମୋହରିର, ଜଣେ ସଚ୍ଚୋଟ ବଡ଼ ବ୍ୟବସାୟୀ ଓ ଜଣେ ନାମଜାଦା ବେଶ୍ୟାଙ୍କୁ ଆମେ ଆମ ଅନୁଷ୍ଠାନ ତରଫରୁ ସମ୍ବର୍ଦ୍ଧିତ କରି ନିଜର ଗୌରବକୁ ଅକ୍ଷୁଣ୍ଣ ରଖିଛୁ । ଏହାପରେ ତାଙ୍କ ଉଦ୍ଦେଶ୍ୟରେ ମାନପତ୍ର ପଠନ କାର୍ଯ୍ୟକ୍ରମ ଆରମ୍ଭ ହେବ ।

ସଭାରେ ତୁମୁଳ ହଟ୍ଟଗୋଳ ଦେଖାଦେଲା । କେତେକ ଯୁବକ ଧକ୍କା ମାରି, ଘରର ଦରଜା—କବାଟ ଭାଙ୍ଗି ପକାଇଲେ । କବିତା ପଢ଼ିବାକୁ ବସିଥିବା କବିମାନଙ୍କ ମଧ୍ୟରୁ କେତେକ, ପଛ ଆଡ଼କୁ ଧାଇଁବାକୁ ଲାଗିଲେ । ଅନ୍ୟ କେତେକ ମହାପ୍ରସାଦ ସେବନ କରିବା ପାଇଁ, ବାଧ୍ୟ ହୋଇ ବସି ରହିଥିଲେ । କାର୍ଯ୍ୟ ବାହାନାରେ ମନ୍ତ୍ରୀ ମହାଶୟ ତରତର ହୋଇ ବିଦାୟନେଇ ଚାଲିଗଲେ । ଛୁରିପୋକ କାମୁଡ଼ିଲା ପରି ବ୍ୟତିବ୍ୟସ୍ତ ହୋଇ ସଭାପତି ମହାଶୟ କେବଳ ଚୌକିରେ ଏପାଖ ସେପାଖ ହେବାକୁ ଲାଗିଲେ । ଉତ୍ତାରେ ଆସିଥିବା କେତେଜଣ ବ୍ୟକ୍ତି ବାଧ୍ୟହୋଇ ମାନପତ୍ର ପାଠକଲେ । ଯାହେଉ; କୌଣସି ପ୍ରକାର ସଭାକାର୍ଯ୍ୟ ସୁରୁଖୁରୁରେ ଶେଷ ହେଲା ।

ମହାପ୍ରସାଦ ଆଶାୟୀ ଲୋକମାନେ ଦାଣ୍ଡକୁ ବାହାରି ଆସିଲେ । ବାହାରେ ଜଣେ ଭଦ୍ରବ୍ୟକ୍ତି ଗୋଟିଏ ମହାପ୍ରସାଦ କୁଡୁକା ଧରି

‘ମହାପ୍ରସାଦ ନଅନ୍ତୁ’—‘ମହାପ୍ରସାଦ ନଅନ୍ତୁ’ ; ପାଟି କରି ସମସ୍ତଙ୍କ ମୁହଁରେ ଟିକିଏ ଟିକିଏ ଜଗନ୍ନାଥଙ୍କ ଡାଲି ଲଗାଇଦେଇ କହୁଥିଲେ—“ଚରଣେ ପାଇଲେ ସିଏ, ଭରଣେ ପାଇଲେ ସିଏ ।”

ଏ କାଣ୍ଡ ଦେଖି, ସେକାଳ ଲୋକମାନେ ଉତ୍ତ୍ୟକ୍ତ ହୋଇ-ଉଠିଲେ । ବଚସା, ମୁଷ୍ଟି ଯୁଦ୍ଧ, ତା’ପରେ ଧୀରେ ଧୀରେ କୁରୁକ୍ଷେତ୍ରରେ ସ୍ଥାନଟି ପରିଣତ ହୋଇଗଲା । ପରଦିନ ସମ୍ବାଦ ପତ୍ରରୁ ଜଣାପଡ଼ିଲା—ଏ ଜୟନ୍ତୀ ଉତ୍ସବରେ ପାଞ୍ଚଜଣ ମୃତ, ଦୁଇଶହ ଲୋକ ସାଂଘାତିକ ଭାବରେ ଆହତ ଓ ତିନିଶହ ଲୋକ ପୁରା ଅକର୍ମଣ୍ୟ ହୋଇ ଯାଇଥିଲେ । ସମ୍ବାଦପତ୍ର ଆହୁରି ମଧ୍ୟ ଲେଖିଥିଲେ—ସମ୍ବର୍ଦ୍ଧିତା ବେଶ୍ୟା ଶ୍ରୀମଣି ବାଈଙ୍କୁ ଗଣ୍ଡଗୋଳ ମଧ୍ୟରୁ ନିରାପଦରେ ନେଇଯିବା ପାଇଁ, ଚେୟାରମ୍ୟାନ ମହାଶୟ କୁଆଡ଼େ କାନ୍ଧରେ ତାଙ୍କୁ ବସାଇ, ଦୌଡ଼ି ପଳାଇ ଯାଇଥିଲେ । ମୋହରର ଉଦଣ୍ଡ ବସ୍ତୁଙ୍କର ଦୁଇଟା ଦାନ୍ତ ଭାଙ୍ଗି ଯାଇଥିଲା ଏବଂ ପ୍ରଚଣ୍ଡ ଏକ ମୁଷ୍ଟି ଆଘାତରେ ବଡ଼ ବେପାରୀ ଖାଁଙ୍କର ଗୋଟାଏ ଆଖି ନଷ୍ଟ ହୋଇଥିଲା ଓ ତାଙ୍କର ଓଠ ତଳେ ଥିବା ସମସ୍ତ ଦାଢ଼ି ନିର୍ମୂଳ ହୋଇଯାଇଥିଲା ।



# ରକ୍ତ ଓ ଚମତ୍କାର ମୁକାବିଲା

ଜଙ୍ଗଲର ସେହି ପରିତ୍ୟକ୍ତ ସ୍ଥାନକୁ ଦେଖିଲେ ବିସ୍ମିତ ହେବାକୁ ହୁଏ । କେଉଁ ଏକ ବିସ୍ମୃତ ଅତୀତର ସ୍ମୃତି ପୃଷ୍ଠା, ସତେ ଯେପରିକି ସେଠାରେ ଖଣ୍ଡ ଖଣ୍ଡ ହୋଇ ଟୁକୁରା ଟୁକୁରା ଭାବେ ପଡ଼ି ରହିଛି । ସ୍ଥାନଟିରେ ଥିବା ଅତି ଜୀର୍ଣ୍ଣ ପୁରାତନ ବିରାଟ ଭଗ୍ନ ଅଟ୍ଟାଳିକାକୁ ଦେଖିଲେ— ଯେ କେହି ମନେ କରିବ, ଅତୀତରେ ଏହି ସ୍ଥାନରେ ଏକ ସମୃଦ୍ଧ ନଗର ନିଶ୍ଚୟ ଥିଲା ବୋଲି ; କିନ୍ତୁ କେବେ ସେ ନଗରର ପତନ ହେଲା, ତାହାର ସଠିକ ଗଣନା ଆଜି ପର୍ଯ୍ୟନ୍ତ କରାଯାଇ ପାରି-ନାହିଁ । ଜଙ୍ଗଲର କିଛି ଦୂରରେ ଥିବା ଏକ ଗୀର୍ଜାର ବୟୋବୃଦ୍ଧ କ୍ୟାଥଲିକ୍ ପୋପ କହନ୍ତି—ସେହି ଜୀର୍ଣ୍ଣ ପୁରାତନ ଭଗ୍ନ ପ୍ରାସାଦର ଅତୀତ ବିଷୟରେ ସେ ଯାହା ଶୁଣିଛନ୍ତି, ତାହା କୌଣସି ସାଧାରଣ ମଣିଷ ତାଙ୍କୁ କହି ନାହିଁ । ପୋପ ମହାଶୟ କହନ୍ତି—ଦିନେ ଅପରାହ୍ଣ ବେଳାରେ ସମୟରେ ସେ ସେହି ପୁରାତନ ଅତୀତର ସ୍ମୃତି ପୀଠ ଦେଖିବାକୁ ଯାଇଥିଲେ । ଭାବ ବିହ୍ୱଳ ହୋଇ, ସେ ସ୍ଥାନର ପ୍ରତ୍ୟେକ ବସ୍ତୁକୁ ଠିକଣାଠି ଭାବେ ପରୀକ୍ଷା କରୁ କରୁ ସନ୍ଧ୍ୟା ହୋଇଯାଇଥିଲା । ତଞ୍ଚଳ ଫେରିବା ପାଇଁ ସେ ଯେତେ ଇଚ୍ଛା କରିଥିଲେ ମଧ୍ୟ, ସତେ ଯେପରିକି କୌଣସି ଅଦୃଶ୍ୟ ଶକ୍ତି, ତାଙ୍କୁ ବାଧ କରି ସେ ସ୍ଥାନରେ ଅଟକାଇ ଦେଇଥିଲା । ଫେରି ଆସିବାର ଚେଷ୍ଟା ବଳବତ୍ତର ହୋଇ-ଥିଲେ ମଧ୍ୟ, ତାଙ୍କର ପାଦ ଆଗକୁ ଚଳିଲା ନାହିଁ । ସେ ବାଧ ହୋଇ ରାତିର ପ୍ରଥମ ପ୍ରହରରେ ଏକ ବରଗଛ ମୂଳେ ବସି ପଡ଼ିଥିଲେ । ପୂର୍ଣ୍ଣିମାର ଚନ୍ଦ୍ର କିରଣ ଜଙ୍ଗଲ ଫାଙ୍କରେ ପ୍ରବେଶ କରି, ସ୍ଥାନଟିକୁ କିଞ୍ଚିତ ଆଲୋକିତ କରୁଥିଲା । ହଠାତ୍ କାହାର ଏକ କରୁଣ କ୍ରନ୍ଦନ ସ୍ୱରରେ ପୋପ ମହାଶୟ ଭୟରେ ଶିହରି ଉଠିଥିଲେ । କିଛିକ୍ଷଣ ପରେ; ସେ ତାଙ୍କ ସମ୍ମୁଖକୁ ଚାହିଁ ଆଶ୍ଚର୍ଯ୍ୟ ହୋଇଥିଲେ ଓ ଗୋଟିପଣ ଥରିବାକୁ ଆରମ୍ଭ କରିଥିଲେ । ତାଙ୍କ ସମ୍ମୁଖରେ ଜଣେ ନାରୀ ଠିଆ ହୋଇ

କହୁଥିଲେ—"ତୁମେ ଏଠାକୁ ଆସିଛ ଖୁବ୍ ଭଲ କରିଛ । ମୁଁ ବହୁ ଦିନରୁ ଅପେକ୍ଷା କରିଥିଲି ଏ ସ୍ଥାନର ଅତୀତ ଇତିହାସ କିଏ ସିନା କାହା ଆଗରେ କହିବା ପାଇଁ । ସେ ଆଶା ଆଜି ମୋର ପୂର୍ଣ୍ଣ ହୋଇଛି । ତୁମେ ପୋପ ଏ ସ୍ଥାନର ଅତୀତର ଇତିହାସ ଆଜି ନିଜ ଆଖିରେ ଦେଖିପାଅ ଏବଂ ଏ ସ୍ଥାନର ପୁନରୁଦ୍ଧାର ପାଇଁ ତୁମେ ରାଜ୍ୟର ଶାସକବର୍ଗଙ୍କୁ ଏହାର ଅତୀତ ଗାଥା ସ୍ମରଣ କରାଇଦେଇ ସଚେତନ କରାଇପାରିବ ।"

ସେତେବେଳେ ପୋପ ମହାଶୟ ଚେତନ ସ୍ତରରୁ ଧୀରେ ଧୀରେ ଅଚେତନ ରାଜ୍ୟକୁ ଚାଲି ଯାଉଥିଲେ ଏବଂ ସେ ଦେଖିବାକୁ ପାଇଲେ···

ରାଜା ଚପଟିଙ୍କ ରାଜ୍ୟରେ ରାଜତନ୍ତ୍ରର ଅତ୍ୟାଚାରର ଲୋପପାଇଁ ଚାରିଆଡ଼େ ବିପ୍ଳବ ଆରମ୍ଭ ହୋଇଗଲା । ବିଦ୍ରୋହୀମାନେ ରାଜ୍ୟର ଚାରିଆଡ଼େ ସଭା, ଶୋଭାଯାତ୍ରା ଆରମ୍ଭ କରିଦେଲେ । ଏହାର କାରଣ ରାଜ୍ୟର ରାଜା ଚପଟି ଅତ୍ୟନ୍ତ ଅତ୍ୟାଚାରୀ ଓ ନିଷ୍ଠୁର, କ୍ରୂର, ପାଗଳ ସ୍ୱଭାବର ଥିଲେ । ରାଜାଙ୍କର ଅତ୍ୟାଚାର ଓ ତାଙ୍କର ପାଗଳାମି ଧୀରେ ଧୀରେ ସୀମାଲଙ୍ଘନ କଲା । ପ୍ରଜାମାନଙ୍କ ପକ୍ଷରେ ଏହା ଅସହ୍ୟ ହୋଇଉଠିଲା । ତେଣୁ ରାଜତନ୍ତ୍ର ଲୋପ ପାଇଁ ପ୍ରଜାମେଳି ଆରମ୍ଭ ହୋଇଗଲା ।

ଏହାପରେ ରାଜା ଚପଟି ନିଜ ରାଜ୍ୟସାରା ଘୋଷଣା କରିଦେଲେ ଯେ—ତାଙ୍କୁ ଯଦି କେହି ନିନ୍ଦା କରିବ, କିମ୍ବା ତାଙ୍କ ବିରୁଦ୍ଧରେ ମେଳି ଆରମ୍ଭ କରିବ, ତେବେ ସେପରି ନିନ୍ଦୁକ ଓ ମେଳିଆମାନଙ୍କୁ କଠିନ ଦଣ୍ଡ ଦିଆଯିବ । ଏ ଘୋଷଣା ପରେ ପରେ ରାଜ୍ୟରେ ପୂର୍ବରୁ ରାଜାଙ୍କର ଯେତେ ନିନ୍ଦୁକ ଥିଲେ ସେମାନଙ୍କୁ ଓ ବର୍ତ୍ତମାନର ବିଦ୍ରୋହୀ ମେଳିଆ ପ୍ରଜାମାନଙ୍କୁ ରାଜା ନିଜର ଅନୁଚରମାନଙ୍କ ଦ୍ୱାରା ଧରାଇ ଆଣିଲେ । ପରଦିନ ରାଜଦରବାରେ ମେଳିଆମାନଙ୍କୁ ଓ ନିନ୍ଦୁକମାନଙ୍କୁ ହାଜର କରାଗଲା । ରାଜା ଚପଟି ସେମାନଙ୍କୁ ଦେଖି କ୍ରୋଧରେ ଲାଲ ହୋଇ କହିଲେ "ତୁମେମାନେ ଯଦି ମୋ ସମ୍ମୁଖରେ ମୋର ଜୟଧ୍ୱନି କରିବ, ତେବେ ତୁମମାନଙ୍କୁ ମୁକ୍ତି ଦିଆଯିବ ଏବଂ ଜୀବନରେ ଆଉ ଦିନକ ପାଇଁ ମୋର

ନିନ୍ଦା କରିବ ନାହିଁ; କିମ୍ବା ମେଳ ଆରମ୍ଭ କରିବ ନାହିଁ ବୋଲି ମଧ୍ୟ, ଏଠାରେ ତୁମକୁ ସତ୍ୟପାଠ କରିବାକୁ ପଡ଼ିବ ।"

ଗଜପତିଙ୍କର ଏ ଆଦେଶ ଶୁଣି ତାଙ୍କର ବନ୍ଧୁକ ଓ ମେଳିଆମାନଙ୍କ ମଧ୍ୟରୁ ଭୟରେ କେତେକ ଜୟଧ୍ୱନି କରି, ଆଉ ତାଙ୍କର ନିନ୍ଦା ନ କରିବା ପାଇଁ ଏବଂ ମେଳିଆଙ୍କ ସହିତ ଯୋଗ ନଦେବା ପାଇଁ ସତ୍ୟପାଠ କଲେ । ଯେଉଁମାନେ ଏପରି କଲେ, ରାଜା ତାଙ୍କୁ ତୁରନ୍ତ ଦରବାରରୁ ମୁକ୍ତ କରି ବିଦାୟ ଦେଲେ । ଯେଉଁମାନେ ରାଜାଙ୍କର ଏ ପ୍ରସ୍ତାବରେ ରାଜି ନହେଲେ, ସେମାନଙ୍କୁ ରାଜା କାରାଗାରକୁ ପଠାଇଦେଲେ ଏବଂ ଜଣ ଜଣ କରି ସମସ୍ତଙ୍କର ବିଚାର ଆଗାମୀ ଦିନ ଦରବାରବେଳେ କରିବା ପାଇଁ ମଧ୍ୟ, ନିଜର କର୍ମଚାରୀମାନଙ୍କୁ ଜଣାଇଦେଲେ ।

ଦ୍ୱିତୀୟଦିନ ଦରବାରରେ ରାଜା ଏଥର ବନ୍ଧୁକ ଓ ମେଳିଆମାନଙ୍କର ନେତା ରୁଦ୍ରପ୍ରତାପଙ୍କୁ ଚାହିଁ ଅତି ଗମ୍ଭୀର ଓ କଠୋର ସ୍ୱରରେ କହିଲେ—"ତୁମେ ଯଦି ମୋର ପ୍ରଶଂସା କରି ଜୟଧ୍ୱନି କରିବ ଏବଂ ମୋ ରାଜ୍ୟରେ ଆଉ ବିଦ୍ରୋହ ନ କରିବା ପାଇଁ ଚୁକ୍ତି ପତ୍ରରେ ସ୍ୱାକ୍ଷର କରି ସତ୍ୟପାଠ କରିବ, ତାହେଲେ ମୁଁ ତୁମକୁ ବର୍ତ୍ତମାନ ମୁକ୍ତ କରିଦେଇ ଏକ ଉଚ୍ଚ ପଦବୀରେ ରଖାଇ ଦେବି; ତା ଯଦି ନ କରିବ ତାହେଲେ ତୁମ ଔଦ୍ଧତ୍ୟର ପ୍ରତିଫଳ ପାଇଁ ତୁମକୁ କଠୋର ଦଣ୍ଡରେ ଦଣ୍ଡିତ କରାଯିବ ।" କିନ୍ତୁ ରୁଦ୍ରପ୍ରତାପ ଜୟଧ୍ୱନି ନକରି ରାଜାଙ୍କୁ କହିଲେ—"ଜଣେ ଅତ୍ୟାଚାରୀ, ଅବିଚାରୀ, ଅବିବେକୀ, ପାଗଳର ଜୟଧ୍ୱନି ମୋପରି ଲୋକ ପକ୍ଷରେ ସମ୍ଭବ ନୁହେଁ । ଯେଉଁଦିନ ମୁଁ ଅନୁଭବ କରିବି ଯେ ଆପଣ ପ୍ରଶଂସା ପାଇବା ପାଇଁ ଯୋଗ୍ୟ ଓ ସମର୍ଥ ହୋଇଛନ୍ତି ଓ ଆପଣଙ୍କ କାର୍ଯ୍ୟ ଯେଉଁଦିନ ଏହା ପ୍ରମାଣିତ କରିବ, ମୁଁ ସେହିଦିନ ଆପଣଙ୍କର ବିନା ଆଦେଶରେ ଜୟଧ୍ୱନି କରିବି ।"

ରୁଦ୍ରପ୍ରତାପଙ୍କର ଏପରି ବେକଠୋକ ଓ ଦୃଢ଼ କଥା ଶୁଣି, ରାଜା ଭୟଙ୍କର ଉତ୍ତେଜିତ ହୋଇଉଠି କହିଲେ—"ମୁଁ ତୁମର କୌଣସି କଥା

ଶୁଣିବା ପାଇଁ ପ୍ରସ୍ତୁତ ନୁହେଁ—ତୁମେ ଶେଷଥର ପାଇଁ କୁହ—ମୋର ଜୟଧ୍ୱନି କରିବ ନା ନାହିଁ ?"

ରୁଦ୍ରପ୍ରତାପ ପୁନର୍ବାର ଦୃଢ଼ କଣ୍ଠରେ କହିଲେ—"ଗୋଟିଏ ଗଧର ଏକନିଷ୍ଠ ପରିଶ୍ରମ ପାଇଁ ତାକୁ ମଧ୍ୟ ପ୍ରଶଂସା କରି ତାର ଜୟଧ୍ୱନି କରାଯାଇ ପାରେ, କିନ୍ତୁ ତୁମପରି ଜଣେ ପାଗଳର ଜୟଧ୍ୱନି ମୋ ପକ୍ଷରେ ସମ୍ଭବ ନୁହେଁ ।" ରାଜା ତପନ୍ତ ଏପରି କଥା ରୁଦ୍ର-ପ୍ରତାପଙ୍କ ଠାରୁ ଶୁଣି, ଭୋକିଲା ବାଘପରି ଗର୍ଜି ଉଠି କହିଲେ—"ଏହାର ଶେଷ ପରିଣତି କଣ ହେବ ତୁମେ ଜାଣ ରୁଦ୍ରପ୍ରତାପ ?"

ରୁଦ୍ରପ୍ରତାପ ପୂର୍ବଠାରୁ ଆହୁରି ଦୃଢ଼ଭାବେ ଘୃଣାର ସହିତ କହିଲେ—"ହେ ଅବିବେକୀ ରାଜା ! ପରିଣାମ ଯେତେ କଠୋର ଓ ନିର୍ମମ ହେଲେ ମଧ୍ୟ, ମୁଁ ମୋର ନିଷ୍ପତ୍ତି ବଦଳାଇ ପାରିବି ନାହିଁ । ଗୋଟିଏ ହିଂସ୍ର ପଶୁର ଜୟଧ୍ୱନି ମୋ ପରି ମଣିଷ ପକ୍ଷରେ ସମ୍ଭବ ନୁହେଁ; ତେଣୁ ମୁଁ ତୁମ ଧମକର ଆଉ ଉତ୍ତର ଦେଇ ମୋର ତୁଣ୍ଡକୁ କଳୁଷିତ କରିବି ନାହିଁ ।"

ରାଜାଙ୍କର ଆଖି ତରଳ ଲୁହାପରି ଲାଲ ହୋଇଗଲା । ସାରା ଅଙ୍ଗ କମ୍ପି ଉଠିଲା । ହାତକୁ ମୁଠା କରି, ଦାନ୍ତ କାମୁଡ଼ି, ତାଙ୍କର ସେନାପତିଙ୍କୁ ସେ ଆଦେଶ ଦେଇ କହିଲେ—"ଏ ଅପରିଣାମଦର୍ଶୀ ସଇତାନକୁ ନେଇଯାଅ । କାରାଗାରରେ ଯେତେ ବନ୍ଦୀ ଅଛନ୍ତି ସମସ୍ତଙ୍କ ସମ୍ମୁଖରେ ଏହାକୁ ଚାବୁକ୍ ମାରି ମାରି ରକ୍ତାକ୍ତ କରିଦିଅ । ମୋ ଦରବାରରେ ଯେତେ କର୍ମଚାରୀ ଅଛନ୍ତି ସମସ୍ତେ ଏହାର ମୁହଁରେ ଛେପ ପକାଇ ଏହାକୁ ପଦାଘାତ କରନ୍ତୁ । ଏହି କଠିନ ଦଣ୍ଡପରେ ଯଦି ମୋର ଜୟଧ୍ୱନି କରିବା ପାଇଁ ଏ ଭଣ୍ଡ ରାଜି ନହୁଏ, ତାହେଲେ ତା ଦେହରୁ ଜୀଅନ୍ତା ଚମଡ଼ା ଓଟାରି ଦେବ ।"

ଆଦେଶ ପାଇବା ସଙ୍ଗେ ସଙ୍ଗେ ସେନାପତି ଧକ୍କା ମାରି ମାରି ରୁଦ୍ରପ୍ରତାପଙ୍କୁ ନେଇଗଲେ । ସବୁ ବନ୍ଦୀମାନଙ୍କୁ ଧାଡ଼ି କରି ଠିଆ କରାଗଲା । ସେମାନଙ୍କ ସମ୍ମୁଖରେ ସେନାପତିଙ୍କ ଆଦେଶକ୍ରମେ, ରାଜାର

ପହରୀଦାର ରୁଦ୍ରପ୍ରତାପଙ୍କର ହାତ ଗୋଡ଼ ବାନ୍ଧି ତାଙ୍କୁ ତଳେ ପକାଇ ନିର୍ମମ ଭାବେ ଚାବୁକରେ ପ୍ରହାର କଲା । ରୁଦ୍ରପ୍ରତାପଙ୍କର ସାରା ଅଙ୍ଗ ଚାବୁକର ଆଘାତରେ କ୍ଷତବିକ୍ଷତ ହୋଇ ତହିଁରୁ ଝର ଝର ହୋଇ ରକ୍ତ ଝରି ଚାଲିଲା । ତାପରେ ରାଜ୍ୟର କର୍ମଚାରୀମାନେ ରୁଦ୍ରପ୍ରତାପଙ୍କ ମୁହଁରେ ଛେପ ପକାଇ ପଦାଘାତ କଲେ । ରୁଦ୍ରପ୍ରତାପଙ୍କ ଆଖିରୁ ବିନ୍ଦୁଏ ମାତ୍ର ଲୁହ ଝରିଲା ନାହିଁ । ସେ କ୍ଷୀଣ କଣ୍ଠରେ କହିଲେ—"ଏତେ ଗୁଡ଼ାଏ ଲୋକ କଣ ଗୋଟିଏ ଲୋକକୁ କ୍ଷମା ଦେଇପାରେ ?"

ଏତେ କଷ୍ଟ ସତ୍ତ୍ୱେ ରୁଦ୍ରପ୍ରତାପ ଜୟଧ୍ୱନି ନ କରିବାରୁ ସେନାପତି ଅତି କର୍କଶ ଗଳାରେ କହିଲେ—"ରେ ନରାଧମ ! ଏଥର ତୁ ତୋର କର୍ମଫଳ ଭୋଗ କରିବା ପାଇଁ ଶେଷ ଦଣ୍ଡ ନେବାକୁ ପ୍ରସ୍ତୁତ ହୁଅ ।" ରୁଦ୍ରପ୍ରତାପ କୌଣସି ଉତ୍ତର ଦେଲେ ନାହିଁ । ଦେହରୁ ଚମଡ଼ା ଉତାରି ଦେବା ପାଇଁ ସେନାପତି ପହରୀଦାରକୁ ହୁକୁମ ଦେଲେ । ପହରୀଦାର ଏକ ତୀକ୍ଷ୍ଣ ତରବାରି ଧରି ରୁଦ୍ରପ୍ରତାପଙ୍କ ଜୀଅନ୍ତା ଦେହରୁ ଛେଲିପରି ଚମଡ଼ା ଛେଲିବା ପାଇଁ ପ୍ରସ୍ତୁତ ହୋଇଗଲା । ଏ ଦୃଶ୍ୟ ଦେଖି ନିରୀହ କଇଦୀମାନେ ଭୟରେ ଶିହରିଉଠିଲେ । ସେମାନଙ୍କର ରକ୍ତହୀନ ମୁହଁକୁ ଚାହିଁ, ସମସ୍ତ କଇଦୀମାନଙ୍କ ଉଦ୍ଦେଶ୍ୟରେ ରୁଦ୍ରପ୍ରତାପ ନିଜ ହାତ ଉଠାଇ କହିଲେ—"ହେ ମୋର କଇଦୀ ବନ୍ଧୁଗଣ ! ତୁମେ-ମାନେ ଭୟ କରନାହିଁ । ନିଜ ନିଷ୍ପତ୍ତିରେ, ନିଜ ସିଦ୍ଧାନ୍ତରେ ଅଟଳ ରୁହ । ଯେତେ ଚେଷ୍ଟା କଲେ ମଧ୍ୟ, ମୋତେ କେହି ମାରି ପାରିବେ ନାହିଁ ।"

ଏହାପରେ ରୁଦ୍ରପ୍ରତାପ, ରାଜାଙ୍କର ଆଜ୍ଞା ପାଳନକାରୀ ସେନାପତିଙ୍କ ଆଡ଼କୁ ଚାହିଁ କହିଲେ—"ଶୁଣ ସେନାପତି ! ତୁମ ରାଜାକୁ କହିଦେବ; ମୋର ରକ୍ତ ଓ ଚମଡ଼ା କେବେ ତାଙ୍କୁ କ୍ଷମା ଦେବ ନାହିଁ । ନିକଟରେ, ଅତି ଗୋପନରେ ମୋର ଚମଡ଼ା ଦେହରୁ ମୁଁ ପୁଣି ଜନ୍ମ ନେବି । ମୋର ନୂତନ ଜନ୍ମ ପରେ ତୋ ରାଜାର ଦେହର ଚମଡ଼ାକୁ ମୁଁ ଉତାରି ନେଇ ପୁଣି ମୋ ପୁରୁଣା ଦେହ ଉପରେ ଲଗାଇଦେବି ।"

ତାଙ୍କର ଏପରି କଥା ଶୁଣି ସେନାପତି ତାଙ୍କୁ ପାଗଳ ବୋଲି ମନେ କଲେ । ଅତି ନିର୍ମମ ଭାବେ ଜୀଅନ୍ତା ରୁଦ୍ରପ୍ରତାପଙ୍କ ଦେହରୁ ଚମଡ଼ା ଉତାରି ଦିଆଗଲା ଓ ଚିରଦିନ ପାଇଁ ଯନ୍ତ୍ରଣା-ବିଜଡ଼ିତ ଆଖି ଦୁଇଟି ତାଙ୍କର ବନ୍ଦ ହୋଇଗଲା । ମୃତ୍ୟୁ ପରେ ତାଙ୍କର ଦାନ୍ତଗୁଡ଼ିକ ଅତି ଭୟଙ୍କର ଦେଖାଯାଉଥିଲା ।

ଭୟରେ କେତେକ କଇଦୀ ଏ ଦୃଶ୍ୟକୁ ଦେଖି ନ ପାରି ନିଜ ହାତରେ ନିଜ ନିଜର ଆଖିକୁ ବନ୍ଦକରି ଦେଇଥିଲେ । କେତେକ କଇଦୀ ଏ ଦୃଶ୍ୟକୁ ଦେଖି ଦେଖି ମରିଯାଇଥିଲେ । ରୁଦ୍ରପ୍ରତାପଙ୍କର ଭୟାବହ ଶେଷ ପରିଣତି ଦେଖି ଅଧିକାଂଶ ନିନ୍ଦୁକ କଇଦୀ ରାଜାଙ୍କର ଜୟଧ୍ୱନି କରି ମୁକ୍ତିଲାଭ କଲେ । ଯେଉଁ କେତେଜଣ ନିଜ ସିଦ୍ଧାନ୍ତ ଓ ବିଶ୍ୱାସରେ ଅଟଳ ରହିଲେ, ସେମାନଙ୍କ ମଧ୍ୟରୁ କେତେକଙ୍କୁ ଜଳନ୍ତା ନିଆଁରେ ପକାଇ ଓ ଆଉ କେତେକଙ୍କ ଦେହରୁ ଜୀଅନ୍ତା ଚମଡ଼ା ଉତାରି ମାରି ଦିଆଗଲା । ଏହିପରି ଭାବେ 'ତପତି' ନିଜ ରାଜ୍ୟରୁ ତାଙ୍କର ନିନ୍ଦୁକ ଓ ମେଳିଆମାନଙ୍କୁ ଶେଷ କରିଦେଲେ । ପ୍ରତିଦିନ ସେ କେବଳ ନିଜର ପ୍ରଶଂସା ଶୁଣିବାକୁ ବ୍ୟଗ୍ର ହୋଇ ଉଠିଲେ । ଯେଉଁ-ମାନେ ତାଙ୍କର ପ୍ରଶଂସା କଲେ, ରାଜା ତାଙ୍କୁ ରାଜ୍ୟର ଗୋଇନ୍ଦା ବିଭାଗରେ ନିଯୁକ୍ତି ଦେଇ, ତାଙ୍କର ନିନ୍ଦୁକ ଯଦି କେହି ଥାନ୍ତି ତାହେଲେ ସେମାନଙ୍କୁ ଧରି ଆଣିବାର ଆଦେଶ ଦେଲେ ।

ରାଜାଙ୍କ ଅନୁଗୃହୀତ ଦଳମାନଙ୍କର ଯାହା ଉପରେ ବ୍ୟକ୍ତିଗତ ରାଗ ରହିଥିଲା ସେମାନେ ତାଙ୍କୁ ରାଜାଙ୍କର ନିନ୍ଦୁକ ଭାବେ ଚିହ୍ନଣ କରି ଶେଷ କରିଦେବାକୁ ଲାଗିଗଲେ ।

ବିପ୍ଳବୀ ରୁଦ୍ରପ୍ରତାପଙ୍କର ଚମଡ଼ା ଖୋଲି ଦିଆଯିବା ପରେ, ସେନାପତି ତାଙ୍କର ମୃତ୍ୟୁ ଖବର ରାଜା ତପତିଙ୍କୁ ଜଣାଇ ଦେଲେ ଏବଂ କହିଲେ—"ରୁଦ୍ରପ୍ରତାପଙ୍କ ଦେହରୁ ଚମଡ଼ା ଉତାରିବା ପୂର୍ବରୁ ସେ କହିଥିଲେ ଯେ ରାଜାଙ୍କୁ କହିଦେବ ମୋର ରକ୍ତ ଓ ଚମଡ଼ା ତାଙ୍କୁ କେବେ କ୍ଷମା ଦେବ ନାହିଁ" ଏବଂ ଆପଣଙ୍କୁ ବଧ କରିବା ପାଇଁ ଏହି

ଚମଡ଼ାରୁ ତାଙ୍କର ନୂତନ ଜନ୍ମ ହେବ ବୋଲି ସେ ସତର୍କବାଣୀ ଦେଇ ଯାଇଛନ୍ତି ?"

ସେନାପତିଙ୍କଠାରୁ ଏ କଥା ଶୁଣି, ରାଜା ତପ୍ତ ସେନାପତିଙ୍କୁ କହିଲେ "ରୁଦ୍ରପ୍ରତାପଙ୍କ ରକ୍ତ ଯେଉଁଠାରେ ପଡ଼ିଛି, ସେ ରକ୍ତକୁ ଚାଟି ଶେଷ କରି ଦେବା ପାଇଁ, ରାଜଧାନୀରେ ଥିବା କୁକୁରମାନଙ୍କୁ ସେଠାକୁ ନେଇଯାଅ ଏବଂ ତାଙ୍କର ଚମଡ଼ାକୁ ଶୁଖାଇ ଆମ ଉଆସରେ ଥିବା ମୋଚିଦ୍ୱାରା ମୋ ପାଇଁ ଜୋତା ପ୍ରସ୍ତୁତ କରି ନେଇ ଆସ । ମୁଁ ଅନବରତ ସେହି ବଦମାସ ଚମଡ଼ାର ଜୋତାକୁ ପାଦରେ ପିନ୍ଧିବି— ଦେଖିବି; ତା ଚମଡ଼ାରେ ସେ କିପରି ନୂତନ ଜନ୍ମ ନେଇ ମୋତେ ହତ୍ୟା କରିବ ।"

ରାଜାଙ୍କ ଆଜ୍ଞା ଅନୁଯାୟୀ ଯେଉଁଠାରେ ରୁଦ୍ରପ୍ରତାପଙ୍କ ଦେହରୁ ଚମଡ଼ା ଛେଲି ଯାଇଥିଲା, ସେହି ସ୍ଥାନକୁ ରାଜଧାନୀରେ ଥିବା କୁକୁରମାନଙ୍କୁ ନେଇଗଲେ ଓ ସେମାନେ ତଳେ ଜମିଥିବା ସମସ୍ତ ରକ୍ତକୁ ଚାଟି ସଫା କରି ଦେଲେ । ଏହାପରେ ଚମଡ଼ାକୁ ଶୁଖାଇ ତାକୁ ଜୋତା ପ୍ରସ୍ତୁତ କରି, ରାଜ ଉଆସର ମୋଚି ରାଜାଙ୍କୁ ଭେଟି ଦେଇଗଲା । ସେହି ଦିନଠାରୁ ରୁଦ୍ରପ୍ରତାପଙ୍କ ଚମଡ଼ା ଜୋତାକୁ ରାଜା ସଦାସର୍ବଦା ପାଦରେ ପିନ୍ଧୁଥିଲେ ।

× × ×

ଦିନେ ରାଜା ଗୋପନରେ ନିଜ ରାଜ୍ୟ ପରିଭ୍ରମଣରେ ଯାଇ ଜାଣି ପାରିଲେ—ଯେ ଏବେ ସୁଦ୍ଧା ତାଙ୍କ ରାଜ୍ୟରେ ବହୁ ନିନ୍ଦୁକ ରହିଛନ୍ତି । ତେଣୁ ପରଦିନ, ରାଜା ଏହି ନିନ୍ଦୁକମାନଙ୍କୁ ଧରିଆଣିବା ପାଇଁ କଠୋର କାର୍ଯ୍ୟ ପନ୍ଥା ଗ୍ରହଣ କଲେ । ଫଳରେ ବହୁ ନିନ୍ଦୁକ ପୁନର୍ବାର ଧରାହୋଇ ଦରବାରକୁ ଅଣାଗଲେ । ରାଜା ଜଣ ଜଣ କରି ସେମାନଙ୍କର ବିଚାର ଆରମ୍ଭ କଲେ । ନିନ୍ଦୁକମାନଙ୍କ ମଧ୍ୟରୁ 'ବ୍ରହ୍ମପ୍ରତାପ'ଙ୍କୁ ଡାକି ରାଜା କହିଲେ—"ତୁମେ ଜାଣ; ମୋର ଜୟଧ୍ୱନି ନ କଲେ ତାର ପରିଣାମ କଣ ହେବ ଥରେ ମୋର ଜୋତାକୁ ଚାହିଁ

ଦେଖ; ମୋର ନିନ୍ଦୁକ ରୁଦ୍ରପ୍ରତାପ ଦେହରୁ ଖଣ୍ଡିଆ ଚମଡ଼ା ଉତାରି ଆଣି ମୁଁ ମୋର ଜୋତା କରି ପାଦରେ ପିନ୍ଧିଛି । ବର୍ତ୍ତମାନ ତୁମେ ଭଲଭାବେ ବିଚାରି କରି ଏବଂ ମୋର ଜୟଧ୍ୱନି କରି ମୁକ୍ତି ଲାଭ କର ।"

ରାଜାଙ୍କ କଥା ଶୁଣି, କାଳ ବିଳମ୍ବ ନ କରି 'ବ୍ରହ୍ମପ୍ରତାପ' ଧାଇଁ-ଯାଇ ରାଜାଙ୍କର ଜୋତା ଧୂଳି ନେଇ ମୁଣ୍ଡରେ ମାରି 'ଜୟ-ଜୟ-ରାଜାଙ୍କ ଜୋତାର ଜୟ' ବୋଲି କହି, ସଭା ଗୃହକୁ ପ୍ରକମ୍ପିତ କଲେ । ରାଜା ଖୁସି ହୋଇଗଲେ ଏବଂ କହିଲେ—"ହେ ବ୍ରହ୍ମପ୍ରତାପ ! ତୁମେ ପ୍ରକୃତ ମୋର ଅନୁଗତ । ଆଜି ପର୍ଯ୍ୟନ୍ତ ପ୍ରଜାମାନଙ୍କ ମଧ୍ୟରୁ କେହି ମୋର ପଦଧୂଳିର ମୂଲ୍ୟ ବୁଝି ନ ଥିଲେ । ଆଜି ପ୍ରଥମ ଥର ପାଇଁ ତୁମେ ତାର ମୂଲ୍ୟ ବୁଝି ମୋର ପଦଧୂଳି ନେଇଛ । ତେଣୁ ତୁମେ ପ୍ରକୃତରେ ମୋର ବିଶ୍ୱସ୍ତ ।"

ଉତ୍ତରରେ 'ବ୍ରହ୍ମପ୍ରତାପ' କହିଲେ—"ଆପଣ ଧନ୍ୟ ମହାରାଜ । ରୁଦ୍ରପ୍ରତାପଙ୍କ ପରି ତ୍ୟାଗୀଙ୍କର ଜୋତା ଆପଣଙ୍କ ପାଦରେ ଥିବାରୁ, ଆପଣଙ୍କ ପାଦ ଧନ୍ୟ ହୋଇଯାଇଛି । ଆପଣଙ୍କ ପାଦରେ ରୁଦ୍ରପ୍ରତାପଙ୍କ ଚମଡ଼ାର ଜୋତା ଥିବା ହେତୁ ଏ ରାଜଧାନୀର ପ୍ରତ୍ୟେକ ଇଞ୍ଚ ମାଟିକୁ ସେ ଜୋତା ସ୍ପର୍ଶ କରିଛି । ତେଣୁ ଏ ମାଟି ମଧ୍ୟ ସେ ଜୋତା ସ୍ପର୍ଶରେ ପବିତ୍ର ହୋଇଯାଇଛି ।"

ରାଜା ଏ କଥା ଶୁଣି, ସଙ୍ଗେ ସଙ୍ଗେ ନିଜ ଗୋଡ଼ରୁ ଜୋତା ଯୋଡ଼ାକ ଖୋଲି ଫିଙ୍ଗିଦେଲେ ଏବଂ ଜୋତା ନଥିବା ଗୋଡ଼ରୁ ଧୂଳି ନେବା ପାଇଁ ବ୍ରହ୍ମପ୍ରତାପଙ୍କୁ ଆଦେଶଦେଲେ ।

ଆଦେଶ ପାଇବାକ୍ଷଣି ବ୍ରହ୍ମପ୍ରତାପ ଧାଇଁ ଯାଇଁ ରାଜାଙ୍କର ପାଦଧୂଳି ଆଣି ମୁଣ୍ଡରେ ମାରି କହିଲେ—"ଯେଉଁ ପାଦରେ ତ୍ୟାଗୀ ରୁଦ୍ରପ୍ରତାପଙ୍କର ଚମଡ଼ା ଲାଗିଛି ସେ ପାଦ ଧନ୍ୟ ।"

ରାଜା ଏକଥା ଶୁଣି ନିଜ ପାଦକୁ ଘୃଣା କରିବାକୁ ଲାଗିଲେ । ନିନ୍ଦୁକମାନେ ପ୍ରତ୍ୟେକ ଜଣ ଜଣ କରି ଧାଇଁ ଯାଇ, ରାଜାଙ୍କ ଗୋଡ଼ରୁ ଧୂଳି ଆଣି ମୁଣ୍ଡରେ ମାରି—"ଏ ପାଦ ଧନ୍ୟ, ଧନ୍ୟ" ବୋଲି ଏକ

ସ୍ୱରରେ କହିବାକୁ ଲାଗିଲେ । କେତେକ ନାଗରିକ ଉଚ୍ଚ ସ୍ୱରରେ କହିଲେ—"ବିପ୍ଳବୀ ରୁଦ୍ରପ୍ରତାପଙ୍କ ଚମଡ଼ା ସ୍ପର୍ଶ କରିଥିବାରୁ ଏ ରାଜଧାନୀ ଧନ୍ୟ ହୋଇଯାଇଛି ।" ଆଉ କେତେକ କହିଲେ—"ବିପ୍ଳବୀ ଓ ତ୍ୟାଗୀ ରୁଦ୍ରପ୍ରତାପଙ୍କୁ ରାଜା ନିଜେ ଦର୍ଶନ କରିଥିବାରୁ ଏ ରାଜ୍ୟ ଧନ୍ୟ ହୋଇଯାଇଛି ।" ରୁଦ୍ରପ୍ରତାପ ! ରୁଦ୍ରପ୍ରତାପ !! ରୁଦ୍ରପ୍ରତାପ !!!—ରାଜା ଚାରିଆଡ଼େ ଏହି ଶବ୍ଦ ଶୁଣିବାକୁ ପାଇଲେ । ତାଙ୍କର ମନେହେଲା ଦରବାରର ସିଂହାସନ, କାନ୍ଥ, ଚଟାଣ, ଛାତ—ସମସ୍ତ ଯେପରି ଭୟଙ୍କର ହୋଇ ଉଠୁଛି । ପବନରେ ରୁଦ୍ରପ୍ରତାପଙ୍କର ଗର୍ଜନ ଦୂରରୁ ଭାସି ଆସିବାପରି ତାଙ୍କୁ ଜଣାଗଲା । ଫିଙ୍ଗି ଦେଇଥିବା ଜୋତା ଯୋଡ଼ାକ ଯେପରି ହଠାତ୍ ମୂର୍ତ୍ତିମନ୍ତ ହୋଇ, ତାଙ୍କ ଆଡ଼କୁ ଧାଇଁବାକୁ ବିସ୍ତାର କରି ଆସୁଥିବା ପରି ସେ ଅନୁଭବ କଲେ । ଭୟରେ ତାଙ୍କର ପାଦ ଥରି ଉଠିଲା । ନିଜ ପାଦ ଦୁଇଟିକୁ ସେ ଆଉ ବିଶ୍ୱାସ କରି ପାରିଲେ ନାହିଁ । ତାଙ୍କର ମନେହେଲା—ସତେ ଯେପରି ତାଙ୍କର ପାଦ ଦୁଇଟା ନିଜ ଦେହରୁ ଅଲଗା ହୋଇଯାଉଛି । ସେ ନିଜ ପାଦ ଦୁଇଟାକୁ ବିସ୍ମୟ ଆଖିରେ ଚାହିଁ ରହିଲେ । ତାଙ୍କୁ ଜଣା ଯାଉଥିଲା—ଯେପରି କି ସେ ପାଦ ଦୁଇଟା ତାଙ୍କ ନିଜର ନୁହେଁ । ପାଦ ଅଙ୍ଗୁଳିର ପ୍ରତ୍ୟେକ ନଖ ଦେହରେ, ସେ ରୁଦ୍ରପ୍ରତାପଙ୍କ ରକ୍ତ ଆଖି ଦେଖିବାକୁ ପାଇଲେ । ଅତି ବିଚଳିତ ଭାବେ ନିଜ କଟିରୁ ତରବାରି ବାହାର କରି ସଙ୍ଗେ ସଙ୍ଗେ ନିଜ ହାତରେ ନିଜର ଗୋଡ଼ ଦୁଇଟାକୁ କାଟି ପକାଇଲେ ।

ପୋଷା କୁକୁରମାନେ ରକ୍ତ ଦେଖି ଅଥୟ ହୋଇ ଉଠିଲେ । ସେମାନେ ପୂର୍ବରୁ ଥରେ ମଣିଷ ରକ୍ତର ସ୍ୱାଦ ଅନୁଭବ କରିଛନ୍ତି । ରାଜାଙ୍କ ପାଦର ରକ୍ତ, ଚଟାଣ ଉପରେ ଧାର ଧାର ହୋଇ ଝରି ପଡ଼ିବାର ଦେଖି, କୁକୁରମାନେ ସେଠାକୁ ଛୁଟିଯାଇ ଚଟାଣରେ ରକ୍ତ ଚାଟିବାକୁ ଆରମ୍ଭ କରିଦେଲେ । ଚଟାଣ ଉପରେ ପଡ଼ିଥିବା ରକ୍ତ ଶେଷ ହୋଇଯିବା ପରେ, କୁକୁର ସବୁ ଲୋଭିଲା ଆଖିରେ ରାଜାଙ୍କ ଦେହରେ ଲାଗିଥିବା ରକ୍ତକୁ ଚାହିଁ ଅଧୀର ହୋଇ ଉଠିଲେ । ସୁନ୍ଦର ଲାଲ ରକ୍ତ ପାଇଁ ବେଶୀ ସମୟ ଅପେକ୍ଷା ନକରି, କୁକୁରମାନେ ରାଜାଙ୍କ ଦେହରେ ଲାଗିଥିବା ରକ୍ତ ଚାଟିବା ନିମନ୍ତେ, ମିଳିତ ଭାବରେ ରାଜାଙ୍କ ଆଡ଼କୁ

ଧାଇଁଗଲେ । ଏକ ସଙ୍ଗେ ସମସ୍ତେ ନିଜର ତୀକ୍ଷ୍ଣ ଦାନ୍ତ ଦ୍ୱାରା ରାଜାଙ୍କୁ ଆକ୍ରମଣ କରି ଶେଷ କରିଦେଲେ । ରାଜଧାନୀର ସମସ୍ତ କର୍ମଚାରୀ ନିରବଦ୍ରଷ୍ଟା ଭାବେ ସେଠାରେ ଠିଆହୋଇ 'ଆହା'-'ଆହା'- କହି ଛଳନାତ୍ମକ ସହାନୁଭୂତି ଜଣାଇଥିଲେ ।

ରାଜାଙ୍କର କଙ୍କାଳ ଚଟାଣ ଉପରେ ରକ୍ତାକ୍ତ ଅବସ୍ଥାରେ ପଡ଼ିରହିଥିବା ସମୟରେ, ବିଦ୍ରୋହୀ ମେଳିଆ ପ୍ରଜାମାନେ ରାଜଧାନୀର ଦୁର୍ଗ ମଧ୍ୟରେ ପଶି, ରାଜବଂଶର ସମସ୍ତଙ୍କୁ ନିର୍ମମ ଭାବେ ହତ୍ୟା କରିଥିଲେ । ରାଜଦୁର୍ଗକୁ ଭାଙ୍ଗି ଚୂରମାର କରିଦେଇ ମାଟିରେ ମିଶାଇ ଦେଇଥିଲେ । ଏପରିକି, ଯେଉଁ କୁକୁରମାନେ ରାଜାଙ୍କୁ ମାରିଥିଲେ, ମେଳିଆମାନେ ସେ କୁକୁରମାନଙ୍କୁ ମଧ୍ୟ ବଞ୍ଚିବା ପାଇଁ ଦେଇନଥିଲେ ।

ପୋପଙ୍କ ଆଗରେ ସେହି ସ୍ତ୍ରୀ ଲୋକ ଜଣକ କାନ୍ଦି କାନ୍ଦି କହୁଥିଲେ—ଯେତେବେଳେ ମେଳିଆମାନେ ରାଣୀହଂସପୁରରେ ପ୍ରବେଶ କଲେ, ରାଜରାଣୀର ଗୌରବ ରକ୍ଷା କରିବା ପାଇଁ ଓ ନିଜ ସତୀତ୍ୱକୁ ଅକ୍ଷୁଣ୍ଣ ରଖିବା ନିମିତ୍ତ ରାଣୀହଂସପୁର କୋଠାର ଛାତ ଉପରୁ ଲମ୍ଫ ପ୍ରଦାନ କରି, ଏହି ବରଗଛ ମୂଳେ ଯେଉଁ ପେ ଖଣ୍ଡ ଦେଖାଯାଉଛି, ମୁଁ ତହିଁରେ ଆତ୍ମହତ୍ୟା କରିଥିଲି । ଯାହାହେଉ, ଅତୀତକୁ ମୁଁ ଆଜି ତୁମ ଆଗରେ ପ୍ରକାଶିତ କରିଦେଇଛି । ଯଦି ଏ ପୁରାତନ ରାଜପ୍ରାସାଦର ଗୌରବ କେବେ ଫେରିଆସେ, ତାହେଲେ ସେତେବେଳେ ହୁଏତ ମୁଁ ଏ ସ୍ଥାନ ଛାଡ଼ି ଚାଲିଯାଇପାରେ ।

ପରଦିନ ସନ୍ଧ୍ୟା ଛ'ଟାରେ ମେଡ଼ିକାଲ୍ ଖଟିଆ ଉପରେ ପୋପଙ୍କର ଯେତେବେଳେ ଚେତା ଫେରି ଆସିଥିଲା, ସେତେବେଳେ ଗତରାତିର ଘଟଣା ମନେପଡ଼ି ତାଙ୍କର ଦେହ ପୁନର୍ବାର କାନ୍ଧି-ଉଠିଥିଲା । ଦୀର୍ଘ ତିନମାସ ପରେ ସୁସ୍ଥ ହୋଇ ପୋପ ଚର୍ଚ୍ଚକୁ ଫେରି ଆସିଥିଲେ; କିନ୍ତୁ ଏହି ସ୍ୱପ୍ନର କଥାକୁ ସେ ବାସ୍ତବଭାବେ ଖୁବ୍ ଠିକ୍‌ଠାକ୍ ବର୍ଣ୍ଣନା କରି ଆଜି ପର୍ଯ୍ୟନ୍ତ ସମସ୍ତଙ୍କ ଆଗରେ କହୁଥାନ୍ତି । ତେଣୁ ତାଙ୍କର କହିବାର ଶୈଳୀଦ୍ୱାରା ଅତୀତର ସେହି କାହାଣୀକୁ ଆମ ପରି ବହୁ ଶ୍ରୋତା ସତ୍ୟ ବୋଲି ମଣିଥାନ୍ତି ।

●

# ପୋକମାନଙ୍କର ପଟୁଆର

ଆଶ୍ଚର୍ଯ୍ୟ ହୋଇ ସେଦିନ ଯାହା ଦେଖିବାକୁ ହେଲା, ତାହା ହେଉଛି, ଏକ ବିରାଟ ପଟୁଆର । ସେ ପଟୁଆରରେ ଏକ ନୂତନତା ଥିଲା । ଘର ଭିତରୁ ସେ ପଟୁଆର ପଦାକୁ ଆସୁଥିଲା । ତା ହେଉଛି ଲକ୍ଷ ଲକ୍ଷ ପୋକଙ୍କର ପଟୁଆର । ଏପରି ଏକ ଅଭୂତପୂର୍ବ ଦୃଶ୍ୟ ଜୀବନରେ ଥରକ ପାଇଁ ମାତ୍ର ଦେଖିବାକୁ ମିଳିଥିଲା । କୌତୂହଳୀ ହୋଇ ବହୁଦର୍ଶକ ଏ ପଟୁଆରକୁ ଉପଭୋଗ କରୁଥିଲେ । ଘର ଭିତରର ଦୁର୍ଗନ୍ଧ ପଦାର ବାୟୁମଣ୍ଡଳକୁ ବିଷାକ୍ତ କରି ଦେଉଥିଲା । କେତେକ ସାହସୀ ଲୋକ ଏକତ୍ର ହୋଇ ଘର ଭିତରକୁ ସେହି ମୃତ ମଣିଷର ଶବକୁ ପଦାକୁ ନେଇ ଆସିଥିଲେ । ପୋକ ପଟୁଆରକୁ ଅତିକ୍ରମ କରି ମୃତ ମଣିଷର ପଟୁଆର ଶ୍ମଶାନ ଆଡ଼କୁ ଆଗେଇ ଯାଇଥିଲା ।

ଆପଣମାନେ ବିଶ୍ୱାସ କରନ୍ତୁ ବା ନ କରନ୍ତୁ; ଏ ଘଟଣା ଯେ ଏହିପରି ଘଟିଗଲା ଓ ବାରମ୍ବାର ଘଟୁଛି—ଏ କଥା ଦୃଢ଼ ଭାବରେ କୁହାଯାଇ ପାରେ । ସାମାନ୍ୟ ବିଷୟକୁ କେନ୍ଦ୍ର କରି ଉଚ୍ଛୃଙ୍ଖଳ ପୋକ-ସବୁ ଗୋଟିଏ ଅମୂଲ୍ୟ ଜୀବନକୁ ନଷ୍ଟ କରି ଦେଇଥିଲେ । ଏହି ପୋକ ପଟୁଆର ସୃଷ୍ଟିର କାରଣ ହେଲା—

ସେ ଘରେ ଗୋଟିଏ ପରିବାରର ଦୁଇଟି ଭାଇ ରହୁଥିଲେ । ବଡ଼ ଭାଇର ବହୁ ସନ୍ତାନସନ୍ତତି ଥିଲେ । ସେମାନେ ସମସ୍ତେ ବଳୁଆ ଓ ବୁଦ୍ଧିଆ ଥିଲେ । ସାନଭାଇର କେତେଗୁଡ଼ିଏ ପିଲା ଥିଲେ; କିନ୍ତୁ ସେମାନେ ସମସ୍ତେ ଦୁର୍ବଳ ଥିଲେ । ବଡ଼ ଭାଇଙ୍କ ପିଲାଙ୍କ ପରି ସାନ ଭାଇ ପିଲାଙ୍କର ଏକତା ନ ଥିଲା । ବଡ଼ ଭାଇ ପିଲାମାନେ ଅତି ଚାଲାଖ ଥିଲେ । ସାନ ଭାଇର ପିଲାମାନେ ଚାଲାଖ ହୋଇଥିଲେ ମଧ୍ୟ, ସେମାନେ ଦୁର୍ବଳ ଥିବାରୁ ଓ ସେମାନଙ୍କ ଭିତରେ ଏକତା ନ ଥିବାରୁ

ସେମାନେ ବଡ଼ ଭାଇ ପିଲାଙ୍କ ସହିତ ପ୍ରତିଯୋଗିତାରେ ପଛେଇ ଯାଉଥିଲେ । ବଡ଼ଭାଇ ପିଲାଙ୍କର ବଳ ଦେଖି, ସାନଭାଇ ପିଲାମାନେ ଡର ଯାଉଥିଲେ । ଚାଲାକି ଚାଲ ଦେଖାଇ ବଡଭାଇ ପିଲାମାନେ ବହୁ ପଇସାର ଅଧିକାରୀ ହୋଇଥିଲେ । ପଇସା ବଳରେ ସେମାନେ ସମସ୍ତଙ୍କୁ ଡରାଇ ରଖିଥିଲେ ।

ଏହି ପରିବାରରେ ଦୁଇଟି ଗଧଥିଲେ । ଗୋଟିଏ ଗଧ ବଡ଼ ଭାଇ ପାଳଥିଲେ । ବଡ଼ଭାଇଙ୍କ ପିଲାଙ୍କ ପରି ବଡ଼ଭାଇଙ୍କର ଗଧଟି ଅତି ଚତୁର ଓ ବଳୁଆ ଥିଲା । ସାନ ଭାଇର ଗଧଟି ମାନ୍ଦା ଓ ମୋଟା ବୁଦ୍ଧିଆ ଥିଲା । ତେଣୁ ସାନଭାଇର ଗଧ ଯେତେବେଳେ ଖାଇବାକୁ ଯାଏ, ସେତେବେଳେ ବଡ଼ଭାଇର ଗଧ ସାନଭାଇର ଗଧକୁ ଆଦୌ ଖୁଆଇ ଦଏନାହିଁ । ତାକୁ ମୁଣ୍ଡିଆ ମାରି ମାରି ତଳେ ଗଡ଼ାଇ ସବୁ ଖାଇଯାଏ । ସାନଭାଇର ଗଧଟି ଧୀରେ ଧୀରେ ଦୁର୍ବଳ ହେବାର ଆଉ ଏକ କାରଣ ଥିଲା । ଯେ କାରଣ ହେଉଛି—କ୍ଷେତରେ ଅମଳ ହୋଇଥିବା ଫସଲକୁ ବାଣ୍ଟକୁଣ୍ଟି କରି ଯେତେବେଳେ ଉଭୟେ ଉଭୟର ଗଧ ଉପରେ ଲଦି ଘରକୁ ଆଣନ୍ତି, ସେତେବେଳେ ବଡ଼ଭାଇର ପିଲାମାନେ ସାନଭାଇର ପିଲାମାନଙ୍କୁ ଆଖି ଦେଖାଇ, ଜବରଦସ୍ତ ନିଜ ଗଧର ବୋଝକୁ ସାନଭାଇର ଗଧ ଉପରେ ଲଦି ଦଅନ୍ତି । ବଡ଼ଭାଇର ପିଲାମାନଙ୍କର ବଳ ଦେଖି, ସାନଭାଇ ନୀରବରେ ଏ ଅବସ୍ଥାର ସହି ଯାଏ । ଫଳରେ ସାନଭାଇର ଦୁର୍ବଳ ଗଧ, ଉଭୟ ଭାଇଙ୍କର ସମୁଦାୟ ବୋଝ ବୋହି ବୋହି ଅଧିକରୁ ଅଧିକତର ଦୁର୍ବଳ ହେଲା ।

ବଡ଼ ଭାଇର ଗଧ ଦିନକୁ ଦିନ ଅତି ଶକ୍ତିଶାଳୀ ହୋଇ ଉଠିଲା । ବଳଶାଳୀ ଲୋକର ଅହଂକାର ପରି ତାହାର ମନରେ ଦାମ୍ଭିକତା ଦେଖାଦେଲା । ସେ ନିଜକୁ ଷଣ୍ଢ ଠାରୁ ଆହୁରି ବଳବାନ ବୋଲି ମନେ କଲା । ଦିନେ ବଡ଼ ଭାଇର ଗଧ ଏକ ଘାସ ପଡ଼ିଆରେ ଚରୁ ଚରୁ ଦେଖିଲା—ତାହାର ଅଳ୍ପ ଦୂରରେ ଗୋଟାଏ ଷଣ୍ଢ ମଧ୍ୟ ଘାସ ଚରୁଥିଲା । ଅହଂକାରୀ ଗଧ ମନେ ମନେ ଭାବିଲା—ଏ ଷଣ୍ଢକୁ ପାଠ ଦେଲେ ସେ ଏଠାକୁ ଆଉ ଜୀବନରେ ଚରିବା ପାଇଁ ଆସିବ

ନାହିଁ । ଷଣ୍ଢଠାରୁ ସେ ନିଜକୁ ବଳୁଆ ମନେ କରି, ଷଣ୍ଢ ସହିତ ଟକ୍କର ପକାଇବା ପାଇଁ, ତା ନିକଟକୁ ଧାଇଁ ଯାଇ ତାକୁ ଅଯଥା ମୁଣ୍ଡି ଆଟାଏ ପକାଇ ଦେଲା । ସାମାନ୍ୟ ଗଧର ଅହଂକାରକୁ ବରଦାସ୍ତ କରି ପାରିଲାନାହିଁ ଷଣ୍ଢ । ରାଗରେ ସେ ନିଜ ଶିଙ୍ଘଦ୍ୱାରା ଗଧକୁ ମାରି ମାରି ତାର ପେଟ ଫୁଟାଇଦେଲା । ଏହି ବଳୁଆ ଗଧ ମରିଯିବାର ସମ୍ବାଦ ପାଇ, ସାନଭାଇ ଓ ତାଙ୍କର ପୁଅମାନେ ବିଶେଷ ଖୁସି ହୋଇଥିଲେ ।

ସେମାନଙ୍କର ଖୁସି ଦେଖି ବଡ଼ ଭାଇ କହିଲେ" ଏଥିରେ ଖୁସି ହେବାର କିଛି ନାହିଁ । ମୋ ଗଧ ଆଦୌ ମରିନାହିଁ । ସାମାନ୍ୟ ଷଣ୍ଢ ମୋ ଗଧକୁ କେବେ ମାରି ପାରେନା । ଉଭୟଙ୍କ ଲଢ଼େଇ ଫଳରେ ମୋ ଗଧ ପେଟରେ ସାମାନ୍ୟ ମାତ୍ର ଆଘାତ ଲାଗିଛି । ମୋ ଗଧ ମରିବା କଥା ଜଣେ ଉପଯୁକ୍ତ ଡାକ୍ତର ଘୋଷଣା ନ କରିବା ପର୍ଯ୍ୟନ୍ତ ମୁଁ କାହାରି କଥା ବିଶ୍ୱାସ କରିବି ନାହିଁ ।

ମଲା ଗଧଟିକୁ ବଡ଼ ଭାଇର ପୁଅମାନେ କାନ୍ଧରେ କାନ୍ଧେଇ ଘରକୁ ଆଣିଲେ ଏବଂ ଆଣିଲାବେଳେ ରାଗରେ ଚିତ୍କାର କରି କହୁଥିଲେ— ଆମର ଗଧ-ଇନ୍‌କିଲାବ, ଜିନ୍ଦାବାଦ ! ମରିନାହିଁ, ମରିନାହିଁ, ଆମର ଗଧ ମରିନାହିଁ !! ସେମାନଙ୍କର ଏପରି କାର୍ଯ୍ୟ ଦେଖି ସାନଭାଇର ପୁଅମାନେ ଓ ଗ୍ରାମବାସୀମାନେ ମନେ ମନେ ଏହି କାର୍ଯ୍ୟକୁ ଉପହାସ କଲେ ମଧ୍ୟ, ଉପରେ କିନ୍ତୁ ଏମାନଙ୍କୁ ଭୟକରି କିଛି କହିପାରୁନଥିଲେ ନାହିଁ ।

ଗଧକୁ ପରୀକ୍ଷା କରିବାପାଇଁ ଡାକ୍ତର ଆସିଲେ । ବଡ଼ଭାଇ ଓ ତା'ର ପିଲାମାନଙ୍କ ଉପରେ ଡାକ୍ତର କହିଲେ—"ଏପରି ବଳୁଆ ଗଧ ମରିଯିବା କଥା ମୁଁ ବିଶ୍ୱାସ କରିପାରୁ ନାହିଁ । କେବଳ ହିଂସାରେ ସାନଭାଇର ପିଲାମାନେ ଗଧ ମରିଯାଇଛି ବୋଲି କହୁଛନ୍ତି ।" ଡାକ୍ତର ପୁନର୍ବାର କହିଲେ—"ଯଦି ଜଣେ ଜୀବ-ବିଦ୍ୟାବିତ୍‌ଙ୍କୁ ଡକାଯାଏ, ତା'ହେଲେ ଚେଷ୍ଟା କଲେ ଏ ଗଧ ପୁଣି ପୂର୍ବପରି କାର୍ଯ୍ୟ କରିବ ।"

ଡାକ୍ତରଙ୍କ ମତ ଅନୁଯାୟୀ, ବଡ଼ ଭାଇ ବିପୁଳ ଅର୍ଥ ଖର୍ଚ୍ଚ କରି ବିଦେଶରୁ ଜଣେ ଜୀବ-ବିଦ୍ୟାବିତ୍‌ଙ୍କୁ ଡକାଇଥିଲେ । ଜୀବ-ବିଦ୍ୟାବିତ୍

ଗଧକୁ ପରୀକ୍ଷା କରି କହିଲେ—"ମରିବା ବଞ୍ଚିବା ଆଜିକାଲି ବଡ଼ କଥା ନୁହେଁ। ବୈଜ୍ଞାନିକ ପଦ୍ଧତିରେ ବିଚାର କରି ଦେଖିଲେ ଜଣାଯାଏ ଯେ, ଯିଏ ମରିଯାଏ ସେ ଅନ୍ୟ ପ୍ରକାରରେ ମଧ୍ୟ ବଞ୍ଚି ରହେ। ତେଣୁ ମୋର ବିଶ୍ୱାସ ଏ ଗଧ ନିଶ୍ଚିତ ବଞ୍ଚିବ।"

ଏଥି ମଧ୍ୟରେ ଗଧର ମଲା ଦେହଟା ଦୁର୍ଗନ୍ଧ ହେବା ହେତୁ ସାନ-ଭାଇର ପିଲାମାନେ ବାହାରେ ଠିଆହୋଇ—'ମଲା ଗଧକୁ ପୋପାଡ଼ି ଦିଅ' 'ପୋପାଡ଼ି ଦିଅ'—ବୋଲି ଚିତ୍କାର କଲେ। ତାଙ୍କର ଚିତ୍କାର ଶୁଣି ବଡ଼ଭାଇଙ୍କର ପିଲାମାନେ ହଜାର ହଜାର ଲୋକଙ୍କୁ ଆଣି ଜମାଇଲେ। ଆସିଥିବା ଲୋକମାନେ ଚିତ୍କାର କରି କହିଲେ—"ଏ ଗଧ ପ୍ରତି ଆମର ସମର୍ଥନ ରହିଛି। ଏ ଗଧ ମରିନାହିଁ। ଗନ୍ଧ ହେଉଛି ବୋଲି ଯେଉଁମାନେ କହୁଛନ୍ତି, ସେମାନେ ଗନ୍ଧବାସନାର ଅର୍ଥ କ'ଣ ଜାଣନ୍ତି ନାହିଁ; କିନ୍ତୁ ଆମେ ଜନତା ଏ କଥା ଜାଣିଛୁ ଯେ—ଏ ଗଧ ବଞ୍ଚିଛି। ଗଧର ବିପୁଳ ଶକ୍ତି ଦେଖି ଗୁଟିଏ ବଦମାସ ଲୋକମାନେ ସେ ଗଧ ମରିଯାଇଛି ବୋଲି ପ୍ରଚାର କରୁଛନ୍ତି।"

ବଡ଼ଭାଇର ଡାକରେ ଆସିଥିବା ଲୋକମାନେ 'ଇନ୍‌କିଲାବ ଜିନ୍ଦାବାଦ ଧ୍ୱନିରେ ବଡ଼ଭାଇଙ୍କ କଥାକୁ ସମର୍ଥନ ଜଣାଇଲେ। ଏତିକିବେଳେ ବଡ଼ଭାଇ ପଦାକୁ ବାହାରି ଆସି ସମବେତ ଲୋକମାନଙ୍କୁ କହିଲେ—"ଭାଇମାନେ! ଚିନ୍ତା କରନା; ତୁମମାନଙ୍କର ବିପୁଳ ଉତ୍ସାହ ଦେଖି ଓ ମୋର ଗଧ ପ୍ରତି ତୁମମାନଙ୍କର ସମର୍ଥନ ଦେଖି, ମୁଁ ସ୍ଥିର କରିଛି; କାହାରି ଦାବୀ ଆଗରେ ମୁଣ୍ଡ ନୁଆଁଇବି ନାହିଁ। ତୁମମାନଙ୍କର ମଙ୍ଗଳ ପାଇଁ ମୁଁ ଏ ଗଧକୁ କଦାପି ପୋପାଡ଼ି ଦେବିନାହିଁ। ଏ ଗ୍ରାମର ମଙ୍ଗଳ ପାଇଁ ଏ ବିଷୟରେ ପରାମର୍ଶ ଦେବା ଲାଗି ମୁଁ ଜଣେ ଆଇନଜ୍ଞଙ୍କୁ ଡକାଇଛି।

ସେଠାକୁ ଆସିଥିବା ଲୋକମାନେ ଏହାପରେ ଫେରି ଯାଇଥିଲେ। ବଡ଼ ଭାଇଙ୍କ ଠାରୁ ପ୍ରଚୁର ଅର୍ଥ ମିଳିବା ଲୋଭରେ ଜଣେ ଆଇନଜ୍ଞ ଆସିଲେ। ସେ ଗଧକୁ ଦେଖି କହିଲେ—"ଗଧ ଶବ୍ଦ ମରେ ନାହିଁ। ତେଣୁ ଏହି ଯେଉଁ ଜନ୍ତୁଟି ମରିଯାଇଛି ଏଇଟା ଗଧ ଶବ୍ଦ ଭିତରୁ ବୋଗାଟିଏ ହୋଇପାରେ। ନଚେତ୍‌ ହେତୁ ଏହି ଗଧ ଶବ୍ଦ ଅନ୍ତର୍ଭୁକ୍ତ

ଲକ୍ଷ ଲକ୍ଷ ଗଧ ଭିତରୁ ଏହି ଗଧ ପାଇଁ ଦୁଃଖ କରିବାର କିଛି ନାହିଁ । ବର୍ତ୍ତମାନ ଆଜି ଏକ ପ୍ରକାର ଚଲଖ ନୂତନ ଗଧ କିଣି ଆଣି ଏଠାରେ ଠିଆ କରାଇଦେଲେ 'ଗଧ' ଶବ୍ଦ ଅମର ବୋଲି ପ୍ରମାଣିତ ହୋଇଯିବ ଏବଂ ତାହା ଫଳରେ ସାନଭାଇର ମୁହଁ କଳା ପଡ଼ିଯିବ ।

ଏହାପରେ ବଡ଼ଭାଇ ମଲା ଗଧକୁ ଫୋପାଡ଼ି ନ ଦେଇ ଘରେ ପକାଇ ରଖିଲେ । ସାନଭାଇ ଓ ତାଙ୍କର ପିଲାମାନେ ଦୁର୍ଗନ୍ଧ ହେତୁ ଘରଛାଡ଼ି ଚାଲିଗଲେ । କିଛିଦିନ ପରେ, ମଲା ଗଧ ପଚି ତହିଁରେ ପୋକ ହୋଇଗଲା । ଏତେ ପୋକ ହେଲା ଯେ ଦିନେ ରାତିରେ ବଡ଼ଭାଇ ଶୋଇଥିଲାବେଳେ ତାଙ୍କ ନାକ, ପାଟି, ଆଖି, ମଳଦ୍ୱାର ବାଟେ ପୋକ ସବୁ ତାଙ୍କ ଦେହ ଭିତରେ ପଶି ତାଙ୍କୁ କାମୁଡ଼ି ମାରି ପକାଇଲେ ।

ଗୋଟିଏ ରାତି ଭିତରେ ଅକଳନ୍ତି ପୋକ ଘର ଭିତରେ ବୋଝେଇ ହୋଇ ଯାଇଥିଲେ । ଫଳରେ ସେମାନେ ଝରକା, ଘର ଦ୍ୱାର ଅଗଣା ବ୍ୟାପିଯିବା ପରେ ମଣିଷ ପହୁଆର ପରି ପହୁଆର ସୃଷ୍ଟି କରି ଘର ବାହାରକୁ ମାଡ଼ି ଆସିଥିଲେ । ସେମାନଙ୍କ ପହୁଆରର ସୁ-ସୁ-ଶବ୍ଦରେ ବଡ଼ଭାଇଙ୍କ ପିଲାଙ୍କ ମଧ୍ୟରେ ହୃତ୍‌କମ୍ପ ଜାତ ହୋଇଥିଲା । ସେମାନେ ଅନୁଭବ କରୁଥିଲେ, ସତେ ଯେପରି ସେମାନଙ୍କ ସହିତ ମୁକାବିଲା କରିବା ପାଇଁ ଏହି ପୋକମାନେ ପହୁଆର ଆରମ୍ଭ କରିଛନ୍ତି ।

ବହୁ କଷ୍ଟରେ ଶବକୁ ଘର ବାହାରକୁ ଅଣାଯାଇ ଶ୍ମଶାନରେ ସଂସ୍କାର କରାଯାଇଥିଲା; କିନ୍ତୁ ଘର ଭିତରେ ରହିଥିବା ଅକଳନ ପୋକ-ସବୁକୁ ନଷ୍ଟ କରିଦେବା ପାଇଁ ସାନଭାଇର ପୁଅମାନେ ଡରି ଯାଇଥିଲେ ।

ଆଜି ପର୍ଯ୍ୟନ୍ତ ବି ବେଳେବେଳେ ଏହି ପୋକମାନେ ଅହଙ୍କାରୀ ମଣିଷମାନଙ୍କ ସହିତ ମୁକାବିଲା କରି ଆସୁଛନ୍ତି । ଆପଣ ଯଦି ଏହାର ପ୍ରମାଣ ନେବାପାଇଁ ଚାହାନ୍ତି ତାହେଲେ ହିଁକୁ ନାହିଁ କରିବା ପାଇଁ ଥରେ ଚେଷ୍ଟା କରନ୍ତୁ ଦେଖି । ପୋକମାନେ ମଧ୍ୟ ଆପଣଙ୍କ ସମ୍ମୁଖକୁ ଆସିଯିବେ; ତେଣୁ ଅତୀତର ସେହି ଘଟଣା ନିଶ୍ଚୟ ସତ୍ୟ ବୋଲି ଆପଣ ମନେ କରିବେ ।



# ଏକ ସାଙ୍କେତିକ ବିପ୍ଳବ

ଯେଉଁସବୁ ନିୟନ୍ତ୍ରଣ ବ୍ୟବସ୍ଥା ବିଫଳ ହେବା ପରେ ଆହୁରି କଠୋର ଭାବେ ଦମନମୂଳକ ବ୍ୟବସ୍ଥା ଗ୍ରହଣ କରାଯାଇଥିଲା; ତଥାପି କୌଣସି ପ୍ରକାର ଜନମତକୁ ଆୟତ୍ତ କରାଯାଇ ପାରୁନଥିଲା । ଏହାପରେ ବିବ୍ରତ ସମ୍ରାଟ ଯେଉଁସବୁ ବ୍ୟବସ୍ଥାର ସୂଚନା ଦେଉଥିଲେ, ତାହା ସମସ୍ତ ଆଲୋଚନା କଲେ ଜଣା ପଡୁଥିଲା ଯେପରିକି ସେ ସମ୍ରାଟଙ୍କର ବୁଦ୍ଧିବୃତ୍ତି ସବୁ ଲୋପ ହୋଇ ଆସିଥିଲା । ଅତ୍ୟନ୍ତ ବିବ୍ରତ ଓ ବିଚଳିତ ହୋଇ ଏବଂ ନିଜର ଜିଦ୍ ରଖିବା ପାଇଁ ଚେଷ୍ଟାକରି ଏଣିକି ସେ ଯାହା ସବୁ କରିବା ପାଇଁ ଚାହିଁଲେ, ତହିଁରୁ ଜଣାପଡୁଥିଲା ଯେ, ତାଙ୍କର ଜ୍ଞାନ ନଷ୍ଟ ହୋଇ ଯାଇଥିଲା ; ବିବେକ, ବିଚାର ଶକ୍ତି ମଧ୍ୟ କାର୍ଯ୍ୟ କରୁ ନଥିଲା । ବୁଦ୍ଧିହୀନ ପାଗଳର ଖିଆଲ ଏଣିକି ତାଙ୍କଠାରେ କାର୍ଯ୍ୟକାରୀ ହେବାର ଦେଖାଗଲା । ଏପରିକି ତାଙ୍କର ବିଶ୍ୱସ୍ତ କର୍ମଚାରୀମାନେ ତାଙ୍କୁ ପାଗଳ ବୋଲି ଗ୍ରହଣ କରନେଲେ ଓ ବିଭିନ୍ନ ଉପାୟରେ ତାଙ୍କୁ ଠକିବା ପାଇଁ ଚେଷ୍ଟା କଲେ । କର୍ମଚାରୀମାନଙ୍କର ଏପରି କାର୍ଯ୍ୟକୁ ସେ ଆଦୌ ବୁଝି ପାରୁନଥିଲେ ।

ତାଙ୍କ ବିରୁଦ୍ଧରେ ଯେଉଁ ଜନମତ ସୃଷ୍ଟି ହେଉଥିଲା, ତାକୁ ବନ୍ଦ କରିବା ପାଇଁ ଦିନେ ସେ ମନ୍ତ୍ରୀଙ୍କୁ ଡାକି ଏକ ଅଦ୍ଭୁତ ଆଦେଶ ଦେଇ କହିଲେ—"ଶୁଣ ମନ୍ତ୍ରୀ ! ମୁଁ ଜାଣିବାକୁ ପାଉଛି, ମୋ ବିରୁଦ୍ଧରେ କେତେକ ପ୍ରଜା, ମେଳବାନ୍ଧି ଚାରିଆଡ଼େ ବୁଲି ପାଟି କରୁଛନ୍ତି । ଚିରଦିନ ମୁଁ ସେମାନଙ୍କର ପାଟି ବନ୍ଦ କରିଦେବା ପାଇଁ ଚାହେଁ । ତେଣୁ ତୁମେ ସେହି ବଦମାସ ପ୍ରଜାମାନଙ୍କ ପାଟିରେ ତାଲା ପକାଇ ଦିଅ ।"

ମନ୍ତ୍ରୀ ଏହାକୁ ପାଗଳର ପ୍ରଳାପ ବୋଲି ମଣିଥିଲେ ମଧ୍ୟ, ତଥାପି ସମ୍ରାଟଙ୍କର ମନ ରଖିବା ପାଇଁ କହିଲେ—"ମଣିମା ! ଏଥିପାଇଁ

ବହୁତ ଚାଳ ଦରକାର ହେବ ଓ ଏହି ଚାଳ ସବୁ କଣିବା ପାଇଁ ପ୍ରଚୁର ଅର୍ଥର ଆବଶ୍ୟକତା ରହିଛି ।"

ମନ୍ତ୍ରୀଙ୍କ ପରାମର୍ଶ ଅନୁଯାୟୀ ଚାଳ କଣିବା ଲାଗି ସମ୍ରାଟ ପ୍ରଚୁର ଅର୍ଥ ଅନୁମୋଦନ କଲେ । ମନ୍ତ୍ରୀ ଓ ମନ୍ତ୍ରୀଙ୍କ ସହକାରୀମାନେ ଚାଳ କଣିବା ପାଇଁ ରାଜକୋଷରୁ ବହୁତ ଅର୍ଥ ଉଠାଇ ନେଲେ ଏବଂ ଏହାର କିଛିଦିନ ପରେ ମନ୍ତ୍ରୀ ଆନନ୍ଦରେ ସମ୍ରାଟଙ୍କୁ ଜଣାଇ ଦେଲେ ଯେ, ଚାଳ କଣା ହୋଇ ଜନସାଧାରଣଙ୍କ ପାଟିରେ ପକାଇ ଦିଆଯାଇଛି । ସମ୍ରାଟ ଏ କଥା ଶୁଣି ଆଶ୍ୱସ୍ତ ହୋଇ ଆନନ୍ଦିତ ହେଲେ ।

କିଛିଦିନ ପରେ ପୁଣି ପ୍ରଜାମାନଙ୍କର ମେଳି ଆରମ୍ଭ ହେବାର ସମ୍ରାଟ ଶୁଣିଲେ । ଏ କଥା ଶୁଣି ମନ୍ତ୍ରୀଙ୍କୁ ଡକାଇ ସେ ଏହାର କାରଣ ପଚାରିବାରୁ ମନ୍ତ୍ରୀ କହିଲେ—"ପ୍ରଜାମାନେ ଏଣିକି ଆଉ ପାଟିରେ ହୋ-ହଲ୍ଲା କରୁନାହାନ୍ତି—ସେମାନେ ଆଖିରେ ଠାରଠାରି ହୋଇ ଆପଣଙ୍କ ବିରୁଦ୍ଧରେ କାର୍ଯ୍ୟ କରୁଛନ୍ତି ।" ସମ୍ରାଟ ଏହା ଶୁଣି ମନ୍ତ୍ରୀଙ୍କୁ କହିଲେ—"ସେମାନଙ୍କ ଆଖିରେ ଚାଳ ପକାଇ ଦିଅ ଏବଂ ଏଥିପାଇଁ ଯେତେ ଅର୍ଥ ଆବଶ୍ୟକ ତାହା ନେଇଯାଅ ।" ପାଗଳା, ସମ୍ରାଟଙ୍କ ଆଦେଶରେ ପୁନର୍ବାର ଆଖିରେ ଚାଳ ପକାଇବା ପାଇଁ ମନ୍ତ୍ରୀ ଓ ତାଙ୍କର ସହକାରୀମାନେ ପ୍ରଚୁର ଅର୍ଥ ରାଜକୋଷରୁ ନେଇଗଲେ । ଏହାର କିଛିଦିନ ପରେ ପୁନର୍ବାର ପ୍ରଜା ମେଳି କଥା ସମ୍ରାଟଙ୍କ କାନକୁ ଆସିଲା । ଶୁଣିବା ସଙ୍ଗେ ସଙ୍ଗେ ସେ ମନ୍ତ୍ରୀଙ୍କୁ ଡକାଇ ପଚାରିଲେ—"ପୁଣି ପ୍ରଜାମାନେ ମେଳି କରୁଛନ୍ତି କିପରି ?" ଉତ୍ତରରେ ମନ୍ତ୍ରୀ କହିଲେ—"ସେମାନେ ପାଟିରେ, ଆଖିରେ ଆଉ କିଛି କରିପାରୁ ନାହାନ୍ତି । କେବଳ କାନ ହଲାଇ ଢଙ୍ଗରେ ସଙ୍କେତ ଦେଇ ପ୍ରଜା ମେଳି ଆରମ୍ଭ କରୁଛନ୍ତି ।" କାନରେ ଚାଳ ପକାଇ ଦେବା ପାଇଁ ଏଥର ସମ୍ରାଟ ଆଦେଶ ଦେଲେ ଓ ଏଥିପାଇଁ ଆବଶ୍ୟକୀୟ ଚାଳ କଣିବା ଲାଗି ଅର୍ଥ ଯୋଗାଇ ଦେଲେ ମଧ୍ୟ ।

ଏଥି ମଧ୍ୟରେ ଗୋଟିଏ ମାସ ବିତିଗଲା । ଜଣେ ଗୁପ୍ତଚର ହଠାତ୍ ଦିନେ ଏହି ପାଟଲେ ସମ୍ରାଟଙ୍କୁ, ରାଜ୍ୟରେ ମେଳି ଆରମ୍ଭ

ହେଲଣି ବୋଲି ଜଣାଇ ଦେଲା । ସମ୍ରାଟ ତୁରନ୍ତ ମନ୍ତ୍ରୀଙ୍କୁ ଡକାଇ ଏ ମେଳି କପରି ସମ୍ଭବ ହେଉଛି ବୋଲି ପଚାରନ୍ତେ, ଚତୁର ମନ୍ତ୍ରୀ କହିଲେ—"ନାକ ଟେକି ଇସାରା ଦେଇ, ପ୍ରଜାମାନେ ମେଳି ଆରମ୍ଭ କରୁଛନ୍ତି ।" ସମ୍ରାଟ ଏ କଥା ଶୁଣି ନାକରେ ମଧ୍ୟ ତାଲା ପକାଇବାର ଆଦେଶ ଦେଇ ମନ୍ତ୍ରୀଙ୍କ ହାତରେ ଏଥିପାଇଁ ଅର୍ଥ ଦେଇଦେଲେ । ଆଉ ଦିନେ ସମ୍ରାଟ ଶୁଣିଲେ ବହୁ ତାଲା ପ୍ରଜାଙ୍କଠାରେ ଝୁଲୁଥିଲେ ମଧ୍ୟ ସେମାନେ ପୁଣି ମେଳି କରିବାକୁ ଉଦ୍ୟମ କରୁଛନ୍ତି । ସମ୍ରାଟ ଏ କଥା ମନ୍ତ୍ରୀଙ୍କୁ ପଚାରିବାରୁ ମନ୍ତ୍ରୀ କହିଲେ—"ଏଥର ପ୍ରଜାମାନଙ୍କ ହାତ ଓ ଗୋଡ଼ରେ ତାଲା ପକାଇବାକୁ ପଡ଼ିବ, କାରଣ ସେମାନେ ହାତରେ ଓ ଗୋଡ଼ ଜରିଆରେ କଥାବାର୍ତ୍ତା ହେଉଛନ୍ତି ।" ସମ୍ରାଟ ଏ କଥା ଅନୁମୋଦନ କରି ଏଥିପାଇଁ ପ୍ରଚୁର ଅର୍ଥ ଯୋଗାଇ ଦେଲେ ।

ସମ୍ରାଟଙ୍କ ପାଗଳାମିର ସୁଯୋଗ ନେଇ ମନ୍ତ୍ରୀ ଓ ରାଜକର୍ମଚାରୀ-ମାନେ ତାଲା କିଣିବା ଆଳରେ ପ୍ରଚୁର ଅର୍ଥର ଅଧିକାରୀ ହୋଇ ଉଠିଲେ । ପ୍ରଜା ମେଳି ପୁନର୍ବାର ହେଉଛି ବୋଲି ବାରମ୍ବାର ଖବର ପଠାଇ ସମ୍ରାଟଙ୍କୁ ବିବ୍ରତ କରାଇଲେ । ପ୍ରଚୁର ଅର୍ଥ ବଳରେ ମନ୍ତ୍ରୀ ରାଜ୍ୟର ବିଦ୍ରୋହୀ ପ୍ରଜାମାନଙ୍କୁ ଆୟତ୍ତ କରିବା ପାଇଁ, ସେମାନଙ୍କର ମଙ୍ଗଳ ଲାଗି କିଛି କିଛି ଲୋକ ଦେଖାଣିଆ କାର୍ଯ୍ୟ କରିଦେଲେ । ବେଳେବେଳେ ସେମାନଙ୍କୁ ମଧ୍ୟ ଆର୍ଥିକ ସାହାଯ୍ୟ ଦେଇ ସେମାନଙ୍କର ପ୍ରିୟପାତ୍ର ହେଲେ । ପ୍ରଜାମାନେ ମନ୍ତ୍ରୀଙ୍କର ଏତାଦୃଶ ଉଦାରତା ପାଇଁ ତାଙ୍କର ଅନୁରକ୍ତ ହୋଇ ଉଠିଲେ ।

ଦିନେ ସମ୍ରାଟଙ୍କୁ ରାଜ୍ୟର ଗୁପ୍ତଚର ଜଣାଇ ଦେଲା ଯେ—ପୁନର୍ବାର ଏବେ ମେଳିଆ ପ୍ରଜାମାନଙ୍କର ଆନ୍ଦୋଳନ ଭୟଙ୍କର ରୂପ ଧାରଣ କରିଛି—ଖୁବ୍ ସମ୍ଭବ ସେମାନେ ସମ୍ରାଟଙ୍କର ଦୁର୍ଗକୁ ନିକଟ ଭବିଷ୍ୟତରେ ଦଖଲ କରିବା ପାଇଁ ଚେଷ୍ଟା ଚଳାଉଛନ୍ତି । ପାଗଳ ସମ୍ରାଟ ଏ ସମ୍ବାଦ ପାଇ ବିବ୍ରତ ହୋଇ ମନ୍ତ୍ରୀଙ୍କୁ ଡକାଇ ରାଗରେ ମନ୍ତ୍ରୀଙ୍କୁ ପଚାରିଲେ—"ପ୍ରଜାଙ୍କ ଦେହର ଚାରିଆଡ଼େ ତାଲା ପଡ଼ିଥିଲେ ମଧ୍ୟ ପୁଣି ମେଳି କପରି ହେବାକୁ ଯାଉଛି ?"

ଉତ୍ତରରେ ମନ୍ତ୍ରୀ କହିଲେ—"ଏଥର ପ୍ରଜାମାନେ ମେଳି କରି ନାହାନ୍ତି ଆଜ୍ଞା; ପ୍ରଜାମାନଙ୍କର ଦେହରେ ଝୁଲୁଥିବା ତାଲି ସବୁ ଏଥର ମେଳି ଆରମ୍ଭ କରିଛନ୍ତି । ବଡ଼ ଆଶ୍ଚର୍ଯ୍ୟର କଥା ହଜୁର, ତାନ୍ତ୍ରିକ ମନ୍ତ୍ରରେ ଚେଇଁ ଉଠିଲି ପରି—ତାଲିଗୁଡ଼ାକ ଚିତ୍କାର କରି ସ୍ଲୋଗାନ ଦେଇ ଏଇ ଆଡ଼କୁ ମାଡ଼ି ଆସୁଥିବାର ମୁଁ ଦେଖି ପାରିଛି ।"

ମନ୍ତ୍ରୀଙ୍କର ଏ କଥା ଶୁଣି ପାଗଳ ସମ୍ରାଟ ଭିତରେ ଆତଙ୍କିତ ହୋଇ ଉଠିଲେ । ସିଏ ଜାଣିଥିଲେ ଯେ, ଜଣେ ଜଣେ ଲୋକଙ୍କ ଦେହରେ ଦଶ ଦଶଟା କରି ତାଲି ପକାଯାଇଛି । ପୂର୍ବେ ଯେତେ ଲୋକ ଆନ୍ଦୋଳନ କରୁଥିଲେ ସେମାନଙ୍କର ସେହି ଆନ୍ଦୋଳନରେ ଯଦି ତାଲିମାନେ ଭାଗ ନିଅନ୍ତି, ତା ହେଲେ ଏ ଆନ୍ଦୋଳନ ପୂର୍ବର ଏଗାର ଗୁଣ ହୋଇ ଦେଖାଦେବ । ସେ ମନେ ମନେ ଭାବିଲେ ତାଲି ସବୁ ଯଦି ମେଳି ବାନ୍ଧି ପାରନ୍ତି ଓ ସେମାନଙ୍କଠାରେ ଯଦି କଥା କହିବା ସମ୍ଭବ ହେଉଛି, ତା ହେଲେ ମୋ ରାଜଧାନୀର ବିଭିନ୍ନ ବିଭାଗ ଓ ବିଭିନ୍ନ ଦ୍ୱାରରେ ଥିବା ତାଲି ସବୁ ନିଶ୍ଚୟ ସେହି ମେଳିରେ ଯୋଗ ଦେଇ ପାରନ୍ତି ।

ସମ୍ରାଟ ଆଉ କ୍ଷଣେ ମାତ୍ର ଅପେକ୍ଷା ନ କରି ତାଙ୍କ ପାଖ ଲୋକଙ୍କୁ ସେ ଆଦେଶ ଦେଇ କହିଲେ ଯେ—ରାଜଧାନୀର ସମସ୍ତ ଦ୍ୱାରରେ, ସବୁ ବାକ୍ସରେ ଓ ଭଣ୍ଡାର ଘରେ ଥିବା ବିରାଟ ତାଲି ସବୁକୁ ତୁରନ୍ତ ଭାଙ୍ଗି ଦେଇ ଏ ତାଲି ମେଳିକୁ ପ୍ରତିହତ କରାଯାଉ । ତାଲି-ମାନଙ୍କର ଷଡ଼ଯନ୍ତ୍ରକୁ ପଣ୍ଡ କରିବା ଲାଗି ସମସ୍ତେ ସତର୍କ ରହିବାକୁ ମଧ୍ୟ ସେ ଆଦେଶ ନାମା ଜାରି କରିଦେଲେ ।

ସମ୍ରାଟଙ୍କ ଆଦେଶ ଅନୁଯାୟୀ ରାଜପ୍ରାସାଦରେ ତାଲି ଭଙ୍ଗା କାର୍ଯ୍ୟ ଶୁରୁ ହୋଇଗଲା । ଫଳରେ ସିଂହଦ୍ୱାର ଦେଇ ଅକ୍ଲେଶରେ ବିଦ୍ରୋହୀଦଳ ଭଣ୍ଡାର ଘରେ ପ୍ରବେଶ କରି ସମସ୍ତ ରାଜକୋଷ ଲୁଣ୍ଠନ କରି ନେଇଥିଲେ ଓ ଚତୁର ମନ୍ତ୍ରୀଙ୍କର ସହାୟତାରେ ସମ୍ରାଟଙ୍କୁ ବନ୍ଦୀ କରି ହତ୍ୟା କରିଥିଲେ ।

ସମସ୍ତ ଘଟଣା ଏକ ନାଟକୀୟ ଗତିରେ ଘଟି ଯାଇଥିଲା । ଅବଶ୍ୟ ସମ୍ରାଟଙ୍କ ମୃତ୍ୟୁପରେ ସେ ରାଜ୍ୟର ଶାସନ ଦାୟିତ୍ୱରେ ସମ୍ରାଟଙ୍କୁ ପ୍ରତାରିତ କରିଥିବା ମନ୍ତ୍ରୀ ରହିଥିଲେ କି ନା ସେ ବିଷୟ ଆବିଷ୍କୃତ ହୋଇ ପାରିନାହିଁ । ତେବେ କେତେକ ନୃତତ୍ତ୍ୱବିତ୍ ମତ ଦିଅନ୍ତି ଯେ—ସେ ରାଜ୍ୟର ଭଗ୍ନ ରାଜପ୍ରାସାଦ ତଳୁ ଯେଉଁ ଏକ ନରକଙ୍କାଳ ମିଳିଥିଲା ତାହା ଉକ୍ତ ଚତୁର ମନ୍ତ୍ରୀଙ୍କର ମୃତାବଶେଷ ବୋଲି ।



# କାନ୍ଦ ସମ୍ମିଳନୀ

ଗରିବମାନଙ୍କର ଦୁଃଖରେ ସେ ବିଚଳିତ ହୋଇଥିବାର ପ୍ରକାଶ କରି ସେମାନଙ୍କ ପାଇଁ କାନ୍ଦିବା ଲାଗି ଇଚ୍ଛା ପୋଷଣ କଲେ । ତାଙ୍କର କାନ୍ଦକୁ ପ୍ରଚାର କରିବା ନିମନ୍ତେ ଏକ ଉନ୍ନତ ଧରଣର ଡାକବାଜ ଯନ୍ତ୍ରର ଆବଶ୍ୟକତା ରହିଛି । ଡାକବାଜ ଯନ୍ତ୍ର ଆଗରେ ଠିଆ ହୋଇ ସେ ଗରିବମାନଙ୍କୁ ସହାନୁଭୂତି ଜଣାଇ ନେଇଁ···ନେଇ··· ହୋଇ ବଡ଼ ପାଟିରେ କାନ୍ଦିବାକୁ ଚାହାନ୍ତି ; କିନ୍ତୁ କାନ୍ଦଟା ଲୋକଙ୍କ ମନକୁ ପାଇବନି ? ଗଧ ବୋବାଳି ପରି ତାହା କର୍ଣ୍ଣ କଟୁ ହେବ ନାହିଁ ତ ? ଯଦି କର୍ଣ୍ଣ କଟୁ ହୁଏ ତା'ହେଲେ କାନ୍ଦିବାଟା ବ୍ୟର୍ଥ ହୋଇଯିବ । ସେଥିପାଇଁ ତାଙ୍କ କାନ୍ଦକୁ ଶ୍ରୁତି ମଧୁର କରିବା ଲାଗି ସେ ଜଣେ ଉପଯୁକ୍ତ ସ୍ୱର ଶିଳ୍ପୀର ସାହାଯ୍ୟରେ ତାଙ୍କ କାନ୍ଦକୁ ଉପଯୁକ୍ତ ସ୍ୱର କରାଇ ନେବେ ଓ ତହିଁରେ ଆଧୁନିକ ଧରଣର ବାଦ୍ୟଯନ୍ତ୍ର ସଙ୍ଗତ କରାଇ ସେ କାନ୍ଦିବେ । ଏହା ଫଳରେ ତାଙ୍କର କାନ୍ଦ ଶୁଣିଲେ ଲୋକଙ୍କର ଆଖି ଗୁଏଁ ଗୁଏଁ ଛଳ ଛଳ ହୋଇ ଉଠିବ । ଏ କାନ୍ଦ ବିଶ୍ୱ ଇତିହାସକୁ ଏକ ନୂତନ ପ୍ରେରଣା ଦେବ । ବିଶ୍ୱର ରାଜନୀତି ଏ କାନ୍ଦକୁ ସମ୍ମାନ ଦେଇ କାନ୍ଦିବାର ଇତିହାସକୁ ନିଷ୍ଠପୂ ଆଗାମୀ ମହାକାଳ ପାଇଁ ଲିପିବଦ୍ଧ କରିଯିବ । ଗରିବ, ସର୍ବହରାମାନେ ଏ କାନ୍ଦ ଶୁଣିଲେ ଆନନ୍ଦିତ ହେବେ—ଧନିକ ଶ୍ରେଣୀ ଏ କାନ୍ଦରେ ଗୁହ୍ନଆ ହୋଇ କମ୍ପି ଉଠିବେ ।

ବାଜା ବାଜିବ—ସ୍ୱର କରାଯିବ—ଡାକବାଜ ଯନ୍ତ୍ର ଲାଗିବ; ତାପରେ କାନ୍ଦ ଆରମ୍ଭ ହେବ । ଏ କାନ୍ଦକୁ ସ୍ୱୟଂ ଶାନ୍ତି ସଙ୍ଘର ମହାମାନ୍ୟ ସଭ୍ୟ ଉଦ୍‌ଘାଟନ କରିବେ । ବିଭିନ୍ନ ସମ୍ବାଦ ପତ୍ରର ବରେଣ୍ୟ ସାମ୍ବାଦିକମାନେ ଏ କାନ୍ଦ ଉତ୍ସବରେ ଯୋଗଦେବେ । ସମ୍ବାଦପତ୍ରରେ ଏହି ନୂତନ ପ୍ରଣାଳୀ କାନ୍ଦ ବିଷୟରେ ଧୁମ୍ପା, ଧୁମ୍ପା

ପ୍ରକାଶ ପାଇବ ; ବାଦ୍ୟ ବେଳର ପଟୋ ଟାଣ ତହିଁରେ ରହିବ । ଆଖିରେ ଲାଗିଥିବା ଲୁହ ଏସ ଫଟୋରେ ପରିଷ୍କାର ଦେଖା ଯାଉଥିବ ।

କାନ୍ଦିବା ପୂର୍ବରୁ ଏଥିପାଇଁ ଗୋଟିଏ ବିଧିବଦ୍ଧ ଯୋଜନା ତିଆରି ଓ ଖର୍ଚ୍ଚ ଅଟକଳ କରିବାକୁ ପଡ଼ିବ । ସେଥିପାଇଁ ଜଣେ ଯୋଜନା ବିଶେଷଜ୍ଞ ଆବଶ୍ୟକ । ସମ୍ବାଦପତ୍ର ମାଧ୍ୟମରେ ଏଥିପାଇଁ ଗୋଟିଏ ବିଜ୍ଞାପନ ପ୍ରକାଶ ପାଇଲା ।

ବିଜ୍ଞାପନରେ ଲେଖାଥିଲା—

"ଜଣେ ଉଚ୍ଚକୋଟିର କରୁଣ ସ୍ୱର ଶିଳ୍ପୀ, ଜଣେ ଯୋଜନା ବିଶାରଦ, କେତେକ ଉନ୍ନତ ଧରଣର ବାଦ୍ୟଯନ୍ତ୍ର-ବାଦକ ଏବଂ ଡାକବାଜ ଯନ୍ତ୍ର ଯୋଗାଣକାରୀ ଆବଶ୍ୟକ । ତୁରନ୍ତ ନାମ ଠିକଣାରେ ବିଜ୍ଞାପନ ପଢ଼ିବାର ମାତ୍ର ସାତଦିନ ମଧ୍ୟରେ ନିଜେ ଆସି ସାକ୍ଷାତ କରନ୍ତୁ ।"

ଏ ବିଜ୍ଞାପନ ପଢ଼ି ଜଣେ ଯୋଜନା ବିଶାରଦ ଅର୍ଥନୀତିଜ୍ଞ ଆସିଥିଲେ । ତାଙ୍କ ସହିତ କାନ୍ଦିବା ବିଷୟରେ ଆଲୋଚନା କରାଗଲା । ଅର୍ଥନୀତିଜ୍ଞ ଯୋଜନା ପଣ୍ଡିତ ମତଦେଲେ—ଏପରି ଏକ ଯୋଜନା ପାଇଁ ବହୁ ଅର୍ଥର ଆବଶ୍ୟକତା ରହିଛି ; କାରଣ ଯେତେବେଳେ ମୁକ୍ତ ରଙ୍ଗମଞ୍ଚରେ କାନ୍ଦ ଆରମ୍ଭ ହେବ ସେତେବେଳେ ନିଶ୍ଚୟ ବୁଲା କୁକୁର ଗୁଡ଼ାକ ଏ କାନ୍ଦ ଶୁଣି ଭୁକି ପାରନ୍ତି । ଅଦ୍ଭୁତ ଶବ୍ଦ ଶୁଣି କୁକୁରଙ୍କର ଭୁକିବା ହେଉଛି ଏକ ସହଜାତ ପ୍ରବୃତ୍ତି । ତେଣୁ ଯେଉଁ ଦିନ କାନ୍ଦ କାର୍ଯ୍ୟକ୍ରମ ମୁକ୍ତ ରଙ୍ଗମଞ୍ଚରେ ଚାଲୁକରାଯିବ ସେଦିନ ସମସ୍ତ ବୁଲା କୁକୁରଗୁଡ଼ାକୁ ସହରର ଦୂରରେ ଏକ ଖୋଲା ସ୍ଥାନରେ ବାନ୍ଧି ରଖିବାକୁ ହେବ । ଏଥିପାଇଁ ଖୁବ୍ କମରେ ତିନିଶହ ସ୍ୱେଚ୍ଛାସେବୀ ଦରକାର । ସେମାନେ ସାରା ସହର ବୁଲି କୁକୁରସବୁକୁ ଧରି ଏହି ଖୋଲା ସ୍ଥାନକୁ ନେଇଯିବେ । କୁକୁରଙ୍କୁ ବୋହିନେବା ପାଇଁ ଦଶ, ବାରଟା ଟ୍ରକ୍ ମଧ୍ୟ ଆବଶ୍ୟକ ହୋଇପାରେ ଏବଂ କୁକୁରସବୁକୁ ବାନ୍ଧିବା

ନିମନ୍ତେ ବହୁତ ଲୁହା ଜଞ୍ଜିର କିଣିବାକୁ ପଡ଼ିବ । ତା ପରେ ଉକ୍ତ ଖୋଲା ସ୍ଥାନରେ ଗୁଡ଼ିଏ ମଜଭୁତ ଲୁହା ଖୁଣ୍ଟ ଲୁଳୁର ବାନ୍ଧିବା ନିମନ୍ତେ ପୋତାଯିବ ।

ଦ୍ୱିତୀୟ କଥା— କାନ୍ଦପାଇଁ 'ବେହେଲା' ହିଁ କେବଳ ଉତ୍କୃଷ୍ଟ ଯନ୍ତ୍ରପାତି । ବେହେଲାର ମୂର୍ଚ୍ଛନା କାନ୍ଦକୁ ଖୁବ୍ କରୁଣ କରିବ । ତେଣୁ ଏ ଉତ୍ସବ ଲାଗି ସାତ ଆଠଶ। ଫ୍ୟାରିସ୍ ବେହେଲା କିଣିବାକୁ ହେବ । ଏହାବ୍ୟତୀତ ଅନ୍ୟାନ୍ୟ ବାଦ୍ୟଯନ୍ତ୍ରର ଆବଶ୍ୟକତା ଥିବାରୁ ତାହା ମଧ୍ୟ କିଣିବାକୁ ହେବ ।

ତୃତୀୟ କଥା—ଏ କାନ୍ଦ ଉତ୍ସବର ଉପାଦେୟତା ସାଧାରଣତଃ ଲୋକେ ଆଦୌ ବୁଝି ପାରିବେ ନାହିଁ । ବିଶ୍ୱାସ କରାଯାଏ ଆପଣ ଭେଁ—ଭେଁ ହୋଇ ଏପରି ଉନ୍ନତ କାନ୍ଦ ପରିବେଷଣ କଲାବେଳେ ସେମାନେ ନିଶ୍ଚୟ ଫେଁ...ଫେଁ ହୋଇ ହସିବେ । ତେଣୁ ସେମାନଙ୍କର ହସକୁ ପଦାକୁ ଜଣାଇ ନଦେବାପାଇଁ ସେମାନଙ୍କ ମୁହଁରେ ରୁମାଲ ବାନ୍ଧିବାକୁ ହେବ । ଏଥିପାଇଁ ବହୁତ ଟଙ୍କାର ରୁମାଲ କିଣିବାକୁ ପଡ଼ିବ ।

ଚତୁର୍ଥରେ—ମଞ୍ଚସଜ୍ଜା; ଆଲୋକ ସଜ୍ଜାପାଇଁ ମଧ୍ୟ ଅର୍ଥର ଆବଶ୍ୟକତା ରହିଛି । ପଞ୍ଚମରେ —ବାଦ୍ୟଯନ୍ତ୍ରୀ ଓ ସ୍ୱର ନିର୍ଦ୍ଦେଶକଙ୍କ ସହିତ କାନ୍ଦକୁ ମେଳ କରାଇବାକୁ ପଡ଼ିବ । ଏଥିପାଇଁ ଖାଦ୍ୟପେୟ ଓ ମଜୁରି ଇତ୍ୟାଦି ଲାଗିବ । ଷଷ୍ଠରେ କାନ୍ଦ ଉତ୍ସବ ଉଦ୍‌ଘାଟନ ଖର୍ଚ୍ଚ ରହିଛି । ଯେଉଁ ମହାମାନ୍ୟ ଏହାକୁ ଉଦ୍‌ଘାଟନ କରିବାକୁ ଆସିବେ ତାଙ୍କ ଯିବାଆସିବା ଖର୍ଚ୍ଚ, ଖାଇବାଖର୍ଚ୍ଚ ଓ ତାଙ୍କ ନିରାପତ୍ତା ଖର୍ଚ୍ଚ ମଧ୍ୟ ବହନ କରିବାକୁ ପଡ଼ିବ । ସପ୍ତମରେ କାନ୍ଦ ଉତ୍ସବର ଯଥେଷ୍ଟ ପୂର୍ବରୁ ଏପରି ଏକ ଉପାଦେୟ କାର୍ଯ୍ୟକ୍ରମ ହେଉଛି ବୋଲି ପ୍ରାୟ ସମସ୍ତ ସମ୍ବାଦ ପତ୍ରରେ ଘନ ଘନ ବିଜ୍ଞାପନ ଦେଇ ଜନସାଧାରଣଙ୍କୁ ଜଣାଇବାକୁ ହେବ । ଏ ସମସ୍ତ ବାବଦରେ ପ୍ରାୟ ଏକ ଲକ୍ଷରୁ ଊର୍ଦ୍ଧ୍ୱ ଖର୍ଚ୍ଚ ହେବ ବୋଲି ଅନୁମାନ କରାଯାଏ । ଏହାପରେ ସମ୍ବାଦିକମାନଙ୍କୁ ଡାକି ଏ କାନ୍ଦର ତାତ୍ପର୍ଯ୍ୟ ବିଷୟରେ ସେମାନଙ୍କୁ ବୁଝାଇବା ନିମନ୍ତେ ସାମ୍ବାଦିକ ସମ୍ମିଳନୀ କରାଯିବ ନିଶ୍ଚୟ ।

ବିଶେଷଜ୍ଞଙ୍କ ସହିତ ଆଲୋଚନା ପରେ ବିଜ୍ଞାପନ ପଢ଼ି ଆସିଥିବା ସ୍ୱର ଶିଳ୍ପୀଙ୍କ ସହିତ ଆଲୋଚନା ଆରମ୍ଭ କରାଗଲା । ସ୍ୱର ଶିଳ୍ପୀ କହିଲେ—କାନ୍ଦର ସ୍ୱରଟା ଯଦି ପଞ୍ଚମ ବରାଡ଼ି ରାଗରେ କରାଯାଏ ତାହେଲେ କାନ୍ଦଟା ଖୁବ୍ ଜମିବ—ତବଲା ସଙ୍ଗତକାରୀଙ୍କର ବାହାଦୁରୀ ବି ପ୍ରମାଣିତ ହେବ । ଯଦି ରାଗ ଭୈରବୀ ହୁଏ ତେବେ ଠିକେ ଧମେଇବ । ବେହାଗ କିମ୍ବା ମହ୍ଲାର ମଧ୍ୟ ମନ୍ଦ ହେବ ନାହିଁ । କାମୋଦ ରାଗରେ ସ୍ୱର ପ୍ରସ୍ତୁତ କରାଗଲେ ଲୋକେ ନ କାନ୍ଦି ରହିପାରିବେ ନାହିଁ । ଏ ସବୁ ସତ୍ତ୍ୱେ ଏଇଟା ଆମର ଓଡ଼ିଶା ପ୍ରଦେଶ ହୋଇଥିବାରୁ କାନ୍ଦର ସ୍ୱର ଓଡ଼ିଶୀ କଲେ ସବୁଠୁ ଭଲ ହେବ । ଓଡ଼ିଶୀ ରାଗରେ କାନ୍ଦ ଗାଇଲା ବେଳେ କାନରେ ହାତ ଦେଇ ଆପଣ ଯଦି ଆଣ୍ଠେଇ ପଡ଼ି କାନ୍ଦ ଗାଇବେ ତାହେଲେ ଶ୍ରୋତମାନେ ତାଳି ମାରି ମାରି ତାଙ୍କ ହାତ ପାପୁଲି ନାଲି ପଡ଼ିଯିବ । ନାହିଁ ତ କିମ୍ବା ସିନେମା ସ୍ୱରରେ କାନ୍ଦିବାକୁ ଚାହିଁଲେ ତେବେ ସେପରି ସ୍ୱର ମଧ୍ୟ ହୋଇ ପାରିବ ।

ବିଭିନ୍ନ ବୁଦ୍ଧିଜୀବୀ ଓ ବିଶେଷଜ୍ଞଙ୍କ ସହିତ ପରାମର୍ଶ କରି କାନ୍ଦ ଉତ୍ସବ ପାଇଁ ବିପୁଳ ଆୟୋଜନ କରାଗଲା । ଏଥିପାଇଁ ଏକ ସ୍ୱାଗତ କମିଟି ଗଢ଼ାଗଲା । ସହରର ଦଣ୍ଡାମର୍କା ଟାଣୁଆ ବିଶିଷ୍ଟ ବ୍ୟକ୍ତି ଏହି କମିଟିର ସଭାପତି ରହିଲେ । ସମ୍ପାଦକ ଭାବେ ଯାହାଙ୍କୁ ରଖାଗଲା ତାଙ୍କୁ ସେ ସହରର ବିରାଡ଼ି କୁଆ ପର୍ଯ୍ୟନ୍ତ ଜାଣିଥିଲେ । କୋଷାଧ୍ୟକ୍ଷ ଭାବେ ଦୈନିକ ସମ୍ବାଦପତ୍ର 'ମଗଜ'ର ଖ୍ୟାତନାମା ସମ୍ପାଦକ ରହିଲେ । ପୂର୍ବରୁ ଏହି 'ମଗଜ' ସମ୍ବାଦପତ୍ରର ସମ୍ପାଦକ ବାତ୍ୟା ଓ ବନ୍ୟା ସାହାଯ୍ୟ କମିଟିର କୋଷାଧ୍ୟକ୍ଷ ଥିଲେ ଏବଂ ଏ ପାଣ୍ଠିରୁ ପ୍ରାପ୍ତ ଏକ ଲକ୍ଷ ଟଙ୍କା ଏପାଖ ସେପାଖ କରି ପୁଣି ରାତି ରାତି ତାକୁ ପାଣ୍ଠି ଭିତରେ ଭର୍ତ୍ତି କରିଦେବାର ଗୌରବ ଅର୍ଜନ କରିଥିଲେ । ତେଣୁ କୋଷାଧ୍ୟକ୍ଷ ଭାବେ ତାଙ୍କର ଖୁବ୍ ସୁନାମ ଥିଲା ।

କାନ୍ଦ ପ୍ରସ୍ତୁତ କାର୍ଯ୍ୟ ତୁମୁଳଭାବେ ଚାଲିଲା । ଘନ ଘନ ସମ୍ବାଦ ପତ୍ରରେ ବିଜ୍ଞାପନ ଦିଆଗଲା । ସର୍ବସାଧାରଣଙ୍କଠାରୁ ଏଥିପାଇଁ ଚାନ୍ଦା ଆଦାୟ କରାଗଲା । ଯେଉଁମାନେ ଚାନ୍ଦା ନଦେଲେ ସେମାନଙ୍କର

ହୃଦୟ ପରିବର୍ତ୍ତନ କରି ସେମାନଙ୍କଠାରୁ ଗ୍ରହା ଆଦାୟ କରିବା ପାଇଁ ଗୋଟିଏ ଲାଠି ବାହିନୀ ଗଢ଼ାଗଲା । ଲାଠି ଦେଖୁ ଦେଖୁ ସେମାନଙ୍କ ହୃଦୟ ଏକ ମୁହୂର୍ତ୍ତରେ ପରିବର୍ତ୍ତନ ହୋଇଗଲା ଓ ସେମାନେ ଆଗ୍ରହର ସହିତ ଗ୍ରହା ଦେବାକୁ ଆରମ୍ଭ କରିଦେଲେ ।

ସ୍ୱେଚ୍ଛାସେବୀମାନଙ୍କର ରହିବା ଓ ଖାଇବା ପାଇଁ ଦଶଟା ହୋଟେଲ ସଂରକ୍ଷିତ ହୋଇଥିଲା । ଏମାନଙ୍କର ଗମନାଗମନର ସୁବିଧା ନିମିତ୍ତ ପ୍ରାୟ କୋଡିଏଟା ଜିପ୍ ଗାଡ଼ି ଯୋଗାଇ ଦିଆ-ଯାଇଥିଲା ।

ପ୍ରଥମେ କୁକୁରସବୁକୁ ସହରରୁ ଅପସାରଣ କରାଯିବାର କାର୍ଯ୍ୟକ୍ରମ ଗ୍ରହଣ କରାଗଲା ; କିନ୍ତୁ ଶହ ଶହ ସ୍ୱେଚ୍ଛାସେବୀ ଖାଇ ସାରିବା ପରେ ସେମାନଙ୍କର ଅଇଣ୍ଠାପତ୍ର ଲୋଭରେ କୁକୁର ସବୁ ସ୍ଥାନ ଛାଡ଼ିବାକୁ ଆଦୌ ଇଚ୍ଛା କରୁ ନ ଥିଲେ । ଫଳରେ ପରିସ୍ଥିତି ଖୁବ୍ ଅସୁବିଧାଜନକ ହୋଇ ଉଠିଲା । ଏ ଅସୁବିଧାକୁ ସୁଧାରିବା ପାଇଁ ଯୋଜନା-ବିଶାରଦ-ପଣ୍ଡିତ ଏକ ଜରୁରୀ ପ୍ରସ୍ତାବ ପାସ୍ କରାଇ ଜଣାଇ ଦେଲେ ଯେ—ସହରରୁ କୁକୁର ଅପସାରଣ ସମ୍ପୂର୍ଣ୍ଣ ନ ହେବା ଯାଏ ସ୍ୱେଚ୍ଛାସେବୀମାନେ ଅନଶନ ବ୍ରତ ପାଳନ କରନ୍ତୁ ଓ ଧୈର୍ଯ୍ୟର ସହିତ ପରିସ୍ଥିତିର ମୁକାବିଲା କରନ୍ତୁ ।

ଅପର ପକ୍ଷରେ କାନ୍ଦ ରିହର୍ସଲ ଆରମ୍ଭ ହୋଇଗଲା । କାନ୍ଦିବାକୁ ପ୍ରସ୍ତୁତ ଥିବା ଭଦ୍ର ମହୋଦୟ ପ୍ରଥମେ ଇଁ···ଇଁ···ହୋଇ କାନ୍ଦିଲେ । ସ୍ୱରଶିଳ୍ପୀ ଏ କାନ୍ଦକୁ ପସନ୍ଦ କଲେ ନାହିଁ ଏବଂ ଯେ ଜଣାଇଦେଲେ ଯେ—ଏ କାନ୍ଦ କୃତ୍ରିମ କାନ୍ଦ ପରି ଜଣା ଯାଉଛି । ତା ପରେ ଭଦ୍ର ମହୋଦୟ ଭେଁ···ଭେଁ···ହୋଇ କାନ୍ଦିଲେ; କିନ୍ତୁ ଯେତେ କରୁଣ ବାଦ୍ୟ ବଜାଇଲେ ମଧ୍ୟ ଆଖିରୁ ବୁନ୍ଦାଏ ଲୁହ ଝରିଲା ନାହିଁ । କାନ୍ଦ ନିର୍ଦ୍ଦେଶକ ଅନୁଭବ କଲେ—ଏପରି କାନ୍ଦିଲେ ଦର୍ଶକ ହାସ୍ୟ ଥଟ୍ଟା କରିବେ—ତେଣୁ ଅନ୍ୟ ପ୍ରକାର କାନ୍ଦିବା ପାଇଁ ସେ ନିର୍ଦ୍ଦେଶ ଦେଲେ । ସେପରେ ଚିଁ···ଚିଁ କାନ୍ଦ ଆରମ୍ଭ

ହେଲା । ତାହା ତେମେଣିଆ ସ୍ୱର ପର ଶୁଣା ଯିବାରୁ ବେହେଲାର ସ୍ୱର ଏହା ସହିତ ଖାପ୍ ଖାଇଲା ନାହିଁ ।

ଏହି ସମୟରେ ଗୋଟିଏ ବଡ଼ ଧରଣର ବ୍ୟାପାର ଘଟିଯିବାର ସମ୍ବାଦ ଆସି ପହଞ୍ଚିଲା । ସ୍ୱେଚ୍ଛାସେବୀମାନଙ୍କ ପାଇଁ ଯେଉଁ ଖାଦ୍ୟ-ପଦାର୍ଥ ଆସୁଥିଲା ସେ ସବୁକୁ ଗହ୍ୱାର ବୁଲା ଷଣ୍ଢମାନେ ମିଳିତ ଆକ୍ରମଣ କରି ଶେଷ କରି ଦେଇଛନ୍ତି ; ଏବଂ କାନ୍ଦ ପରିବେଷଣ ପାଇଁ ଯେଉଁ ମଞ୍ଚ ପ୍ରସ୍ତୁତ ହେଉଥିଲା ତାହାକୁ ସୁ ସଜ୍ଜିତ କରିବା ଲାଗି ଯେତେ ରଙ୍ଗ ବେରଙ୍ଗର କାଗଜ ଆସୁଥିଲା ତାକୁ ଛେଳିମାନେ ଖାଇ ଦେଇଥିଲେ । ଭଲ ଭଲ ତବଲା ଦୁଇଟାର ଉପର ଚମଡ଼ା ଗୁଡ଼ିକୁ ମୂଷା କାଟି ନଷ୍ଟ ମଧ୍ୟ କରି ଦେଇଥିଲା ଏବଂ ଯେଉଁସବୁ ରୁମାଲ ଶ୍ରୋତାମାନଙ୍କ ମୁହଁରେ ବନ୍ଧା ହେବା ପାଇଁ ଆସିଥିଲା, ତହିଁରୁ ଅଧିକାଂଶ ଗ୍ୱେଇଁ ହୋଇ ଯାଇଥିବାର ସମ୍ବାଦ ଆସି ପହଞ୍ଚିଲା ।

କାନ୍ଦ ଅନୁଷ୍ଠାନ ଆରମ୍ଭ ହେବା ପୂର୍ବରୁ ଷଣ୍ଢ, ଛେଳି, ମୂଷା ଓ ଗ୍ୱେଇଁର ଉତ୍ପାତ ଯେ ଏତେ ହଠାତ୍ ଆରମ୍ଭ ହୋଇଯିବ ଏ କଥା ଯୋଜନା-ବିଷାରଦ-ବିଶେଷଜ୍ଞ ଆଦୌ ଅନୁମାନ କରି ନଥିଲେ । ତେଣୁ ତାଙ୍କ ଯୋଜନା ତଠାରେ ଏଥିପାଇଁ କୌଣସି ବ୍ୟୟ ବରାଦ ନଥିଲା । ବର୍ତ୍ତମାନ ଏ ପ୍ରକାର ଯେଉଁ ନୂଆ ସମସ୍ୟାମାନ ସୃଷ୍ଟି ହେଲା ତହିଁରେ ଉଦ୍ୟୋକ୍ତା ମହାଶୟ ବିଚଳିତ ହୋଇ ଉଠିଲେ । ଅପର ପକ୍ଷରେ କାନ୍ଦଟାକୁ ପ୍ରାକୃତିକ ବାନ୍ଦରେ ପରିଣତ କରିବା ପାଇଁ ସେ ଯେତେ ଉଦ୍ୟମ କଲେ ମଧ୍ୟ ତାହା ଆପେ ଆପେ କୃତ୍ରିମ ହେଉଥିବାର ସେ ଅନୁଭବ କରୁଥିଲେ ।

ପୁନର୍ବାର ସମ୍ବାଦ ହସ୍ତଗତ ହେଲା ଯେ, ବୃନ୍ଦାବନ ତଳେ ଯେଉଁ ଆକୃ ଟ୍ରିକ୍ ସ୍ୱେଚ୍ଛାସେବୀମାନଙ୍କର ତରକାରି ପାଇଁ ଆସିଥିଲା, ତହିଁରୁ ଅଧିକାଂଶ ପଚିଯିବାକୁ ଆରମ୍ଭ କରିଛି ଏବଂ ଗହ୍ୱାର ବୁଲା କୁକୁର ସବୁକୁ ସହରର ଦୂରକୁ ଅପସାରଣ କରାହେଉଥିବା ବେଳେ କେତେକ ସ୍ୱେଚ୍ଛାସେବୀ କୁକୁର କାମୁଡ଼ାରେ ଆହତ ହୋଇଛନ୍ତି । ଏହି ଆହତ-ମାନଙ୍କ ପାଇଁ ଜଣେ ଉଚ୍ଚକୋଟୀର ଡାକ୍ତର ବନ୍ଧୁମାନଙ୍କର ମଧ୍ୟ

ଆବଶ୍ୟକତା ଅନୁଭୂତ ହେଉଥିବା କଥା ଅନୁଭବ କରାଯାଉଛି । ଚାନ୍ଦା ଆଦାୟକାରୀମାନଙ୍କୁ ସଂଯତ କରିବା ମଧ୍ୟ କଷ୍ଟକର ବ୍ୟାପାର ହୋଇପଡ଼ିଲାଣି । ଆଦାୟକାରୀମାନେ ଚାନ୍ଦା ରସିଦ ନେଇଗଲା ପରେ ଏବେ ତାହା ଫେରାଉ ନାହାନ୍ତି; କିମ୍ବା ଆଦାୟ ଅର୍ଥ ଜମା ଦେଉ ନାହାନ୍ତି । ତାଙ୍କୁ ଖୋଜିବା ପାଇଁ ଲୋକ ପଠାଇଲେ ଏବେ ସେମାନେ ଧରାଛୁଆଁ ନ ଦେଇ ଲୁଚିବାକୁ ଆରମ୍ଭ କରିଛନ୍ତି ।

ସମସ୍ୟା ସବୁର ସମାଧାନ ପାଇଁ ଯେଉଁ ଉପାୟ ଉଦ୍‌ଭାବନ କରାଯାଉଛି ସେହି ଉପାୟରୁ ମଧ୍ୟ ଆହୁରି ବହୁ ସମସ୍ୟା ସୃଷ୍ଟି ହେଉଛି ।

ଏ ସବୁ ଅବ୍ୟବସ୍ଥାର ନିରାକରଣ ପାଇଁ ସ୍ୱାଗତ କମିଟିର ଏକ ଗୋପନ ବୈଠକ ବସିଲା । କମିଟିର ସଭାପତି କହିଲେ—"ବର୍ତ୍ତମାନ ଅବସ୍ଥା ଦେଖି, ମୋର ଅନଶନ କରିବାକୁ ଇଚ୍ଛା ହେଉଛି । ସମ୍ପାଦକ କହିଲେ—"ମୁଁ ଏ ସବୁ ଦେଖି ଉପାୟହୀନ ଭାବେ ଲଜ୍ଜାରେ କେବଳ ଜନଗଣ ମାରବରେ ଘରେ ବସି ଲୁହ ଝରାଇ ଖିଆପିଆ ଭୁଲି ଗଲଣି ।" ସହ ସମ୍ପାଦକ କହିଲେ—"କାନ୍ଦ ସମ୍ମିଳନୀ କରିବାକୁ ହେଲେ କାନ୍ଦିବାକୁ ପଡ଼େ ବୋଲି ମୋର ଯଦି ଧାରଣା ଥାଆନ୍ତା, ତାହେଲେ ମୁଁ ହସ ସମ୍ମିଳନୀ କରାଇଥାନ୍ତି ।"

× × ×

ରାଜ୍ୟର ଶାସକଙ୍କ କାନକୁ ଧୀରେ ଧୀରେ ଏହି ସମ୍ବାଦ ଗଲା । ଶାସକ ନିଜ ଦରବାର ଡକାଇ ପାର୍ଶ୍ୱଚରମାନଙ୍କ ଗହଣରେ ଏ ସମ୍ମିଳନୀ ବିଷୟରେ ବିଚାର କଲେ । ଶାସକ କହିଲେ—"ମୋ ରାଜ୍ୟରେ କାନ୍ଦିବାର ଆବଶ୍ୟକତା ନାହିଁ । କାରଣ ମୋ ରାଜ୍ୟରେ ଅଭାବ ବୋଲି କୌଣସି ଚିଜ ନାହିଁ । ଲୋକେ ଭାତ ଖାଇବାକୁ ନ ପାଇଲେ ମଧ୍ୟ ଗହମ ଖାଇ ଚଳି ଯାଉଛନ୍ତି । ଯେଉଁମାନେ ଗହମ ଖାଇବାକୁ ନ ପାଉଛନ୍ତି ସେମାନେ ଡାଲି ଖାଇ ଚଳି ଯାଉଛନ୍ତି । ଡାଲି ଯେଉଁମାନଙ୍କୁ ନ ମିଳୁଛି ସେମାନେ ଶାଗ ଖାଇ ଚଳି ଯାଉଛନ୍ତି । ଏ ସବୁ ଉପରୁ ଜଣାଯାଏ ଯେ—ଏ ରାଜ୍ୟର ସମସ୍ତେ ହସିବାକୁ ଚାହାନ୍ତି ।

ହସିବାକୁ ଗୃହଁ ଥିବା ଲୋକମାନଙ୍କ ଉପରେ ଜବରଦସ୍ତ କାନ୍ଦକୁ ଲଦି ଦେବାର ଅର୍ଥ ହେଉଛି, ଜନମତକୁ ଗୃପିଦେବା ଓ ଗଣମତକୁ ଅସମ୍ମାନ କରିବା । ତେଣୁ ତୁରନ୍ତ ଏପରି ସମ୍ମିଳମୀକୁ ବନ୍ଦ କରିବା ପାଇଁ ମୁଁ ଆଦେଶ ଦେଉଛି ।"

× × ×

କାନ୍ଦ ସମ୍ମିଳନୀ ସ୍ୱାଗତ କମିଟିର ଗୋପନ ବୈଠକ ବସିଥିଲା-ବେଳେ ଶାସକଙ୍କର ଏପରି ନିଷେଧାଦେଶ ସେମାନଙ୍କ ନିକଟରେ ପହଞ୍ଚିଲା ।

ଏତେ ଗୁଡ଼ାଏ ଆୟୋଜନ ପରେ ଏପରି ଏକ ଅପ୍ରୀତିକର ସମ୍ବାଦରେ ସମସ୍ତେ ମର୍ମାହତ ହୋଇପଡ଼ିଲେ । କେହି କେହି ସେ ସମ୍ବାଦ ଶୁଣୁ ଶୁଣୁ ମୂର୍ଚ୍ଛା ହୋଇଗଲେ । କାନ୍ଦିବା ପାଇଁ ଯେଉଁ ଭଦ୍ରବ୍ୟକ୍ତି ଏ ଉତ୍ସବର ଆୟୋଜନ କରିଥିଲେ, ଏପରି ଦାରୁଣ ସମ୍ବାଦ ଶୁଣି ସେ ଭେଁ...ଭେଁ...ହୋଇ କାନ୍ଦି ଉଠିଲେ । ତାଙ୍କ ଆଖିରୁ ଧାର ଧାର ହୋଇ ଲୁହ ଝରିବାକୁ ଲାଗିଲା । କାନ୍ଦ ନିର୍ଦ୍ଦେଶକ ଏ ଦୃଶ୍ୟ ଦେଖି ଖୁସି ହୋଇ କହିଲେ—"ଏପରି କାନ୍ଦିବାର ନାମ ପ୍ରକୃତ କାନ୍ଦ ।" କିନ୍ତୁ ନିର୍ଦ୍ଦେଶକଙ୍କ କଥା ଶୁଣିବା ପାଇଁ ଆଉ କେହି ପ୍ରସ୍ତୁତ ନଥିଲେ । ଗୋପନ ବୈଠକ କାନ୍ଦ ବୈଠକରେ ପରିଣତ ହୋଇଗଲା । ଅବଶ୍ୟ ଏ କାନ୍ଦକୁ ଉପଭୋଗ କରିବା ପାଇଁ ସେଠାରେ କେହି ଦର୍ଶକ ନ ଥିଲେ ।

କାନ୍ଦ ଉତ୍ସବର ଆୟୋଜନକାରୀ ଭଦ୍ରମହୋଦୟ ଘରକୁ ଫେରି ବିଛଣାରେ ଶୋଇ କାନ୍ଦି କାନ୍ଦି ନିଜ ଲୁହରେ ତକିଆ ଭିଜାଇ ଦେଲେ ଓ କାନ୍ଦର ଉଦ୍‌ବେଗ ବଢ଼ିବାରୁ ସେ କଇଁ କଇଁ ହୋଇ କାନ୍ଦି ସାରା ପରିବାରକୁ ଶୋକ ସାଗରରେ ଭସାଇ ଦେଲେ ।

× × ×

—"ହେ ଶୁଣୁଛ ! ତୁମେ ଏପରି କାନ୍ଦୁଛ କାହିଁକି ? କ'ଣ ହେଲା ତୁମର···?

ସ୍ତ୍ରୀଙ୍କ ଡାକରେ ତାଙ୍କର ନିଦ ଗୁହୁଁକରି ଭାଙ୍ଗିଗଲା । ସତକୁ ସତ ସେ ଆଖିରେ ହାତ ମାରି ଦେଖିଲେ, ତାଙ୍କ ଆଖିର ଲୁହ ଗାଲ ଆଉକୁ ବହି ଆସିଥିଲା ଏବଂ ତକିଆର କିଛି ଅଂଶ ଓଦା ଯାଇଥିଲା । ଏପରି ସ୍ୱପ୍ନ ସେ ଜୀବନରେ ସେହି ଥରକ ପାଇଁ ମାତ୍ର ଦେଖିଥିଲେ । ଯେତେ ଚେଷ୍ଟା କରି ମଧ୍ୟ ଏପରି ଏକ ଅଦ୍ଭୁତ କାନ୍ଦ ସମ୍ମିଳନୀ ସ୍ୱପ୍ନ ଆଉ କେବେ ଦେଖିବାକୁ ପାଇ ନଥିଲେ ।

ସେ ସ୍ୱପ୍ନ ଦେଖି କାନ୍ଦୁଥିବାର ଜାଣିପାରି, ତାଙ୍କ ସ୍ତ୍ରୀ ସେ ଦିନ ଖୁବ୍ ହସିଥିଲେ ଓ ପରଦିନ ପିଲମାନଙ୍କ ଆଗରେ ଏ କଥା କହି ନିଜ ସ୍ୱାମୀଙ୍କୁ ଲଜ୍ଜିତ କରାଇଥିଲେ ।



# ଶୁଦ୍ଧ ପୀଠ

ବୈକୁଣ୍ଠକୁ ଯିବାପାଇଁ ସାଧନ କରିବା ପୂର୍ବରୁ ଶୀଳଭଦ୍ର ପ୍ରଥମେ ସାଧନ ଉପଯୋଗୀ ସ୍ଥାନ ସନ୍ଧାନରେ ବାହାରିଲେ । ସେ ଜାଣିଥିଲେ ସ୍ଥାନର ମହତ୍ତ୍ୱ ଉପରେ ସାଧନର ସଫଳତା ନିର୍ଭର କରେ ।

ପ୍ରଥମେ ଯେତେବେଳେ ପରିବାର ଛାଡ଼ି ଆସିଲେ ସେ, ସେତେବେଳେ ମନେକରିଥିଲେ—ଏ ସଂସାରର ବିଷମ ଜଞ୍ଜାଳରୁ, ଏ ସଂସାରର କୋଳାହଳମୟ ପରିବେଶରୁ ସେ ଚିରଦିନ ପାଇଁ ଅପସରି ଯାଇ ଏକ ସୁନ୍ଦର ଶାନ୍ତ ପୃଥିବୀର ସନ୍ଧାନ ନିଶ୍ଚୟ କରିନେବେ । ଜୀବନକୁ ସେ ଉପଭୋଗ କରିବେ କେବଳ ଏକ ଶାନ୍ତି-ଅମୃତମୟ ସୁସ୍ୱାଦୁ ଫଳ ପରି । ତାଙ୍କର ଆଶାଥିଲା ଏକ କଳ୍ପନାର ଗୋଲାପ । ସେ ଜାଣିଥିଲେ ସେ ଗୋଲାପ କେବଳ ବୈକୁଣ୍ଠରେ ବିକଶିତ ହୁଏ । ତାର ସନ୍ଧାନ ନେବାକୁ ଚେଷ୍ଟାକରିବାର ନାମ ହେଉଛି ସାଧନ । ସେ ସାଧନ ପାଇଁ ଏ ସଂସାର, ଏ ପରିବାର ଉପଯୁକ୍ତ ସ୍ଥାନ ନୁହେଁ । ଏ ସଂସାର ହେଉଛି ନର୍କର ସୋପାନ । ବୈକୁଣ୍ଠ ପାଇଁ ଯେଉଁ ସୋପାନ ରହିଛି ତା'ର ନାମ ହେଉଛି 'ଶୁଦ୍ଧପୀଠ' । ଏହି ଶୁଦ୍ଧ ପୀଠର ସନ୍ଧାନ ନେବାପାଇଁ ଶୀଳଭଦ୍ର ଘରଛାଡ଼ି, ପରିବାର ଛାଡ଼ି ଚାଲିଆସିଛନ୍ତି । ଅତୀତର ତିକ୍ତ ଜ୍ୱାଳାମୟ ଯନ୍ତ୍ରଣାର ଦଂଶନରେ ସେ କ୍ଷତ ବିକ୍ଷତ ହୋଇ ବିତସ୍ପୃହ ଭାବେ, ଅତୀତକୁ ଦୂର ଭାବେ ଫିଙ୍ଗି ଦେଇ ଆସିଛନ୍ତି ।

ଶୀଳଭଦ୍ର ପରିବାର ଛାଡ଼ିଛନ୍ତି; ଲୋଡ଼ୁଛନ୍ତି ବୈକୁଣ୍ଠ ଯିବାପାଇଁ ଉପାୟ ଓ ପନ୍ଥା । ବୈକୁଣ୍ଠର ନାମ ପ୍ରଥମେ ସେ ଯେତେବେଳେ ଶୁଣିଲେ ସେତେବେଳେ ଆତ୍ମବିସ୍ମୃତ ହୋଇଉଠୁଥିଲେ ସେ । ଜୀବନ ସଂଗ୍ରାମରେ ଆହତ ଶୀଳଭଦ୍ର ହଠାତ୍ ସତେଜ ହୋଇ ଉଠିଥିଲେ । ସେ ଅନୁଭବ କଲେ; ମଣିଷ କେବଳ ଏହି ଯନ୍ତ୍ରଣା ରାଜ୍ୟ ପାଇଁ ସୃଷ୍ଟି ହୋଇନାହିଁ; ତା ପାଇଁ ଆଉ ଏକ ରାଜ୍ୟ ରହିଛି । ସେ ରାଜ୍ୟର

ସନ୍ଧାନ କଷ୍ଟସ୍ପ ମିଳପାରେ । ସେ ରାଜ୍ୟକୁ ଯିବା ମଧ୍ୟ ଖୁବ୍ ଅସମ୍ଭବ ନୁହେଁ । ସମସ୍ତ ତର୍କଣା ବଳରେ ସେ ଭାବି ନେଇଥିଲେ—ଏ ଯନ୍ତ୍ରଣାର ଜଞ୍ଜିରକୁ ଛିଣ୍ଡାଇ, ଏ କୋଳାହଳମୟ ପରିବେଶକୁ ଛାଡ଼ି ପଳାଇ ଯିବାକୁ ହେବ ।

ମାନସିକ ଦ୍ୱନ୍ଦର ପ୍ରବଳ ବାକ୍ ବିତଣ୍ଡାକୁ ପରାହତ କରି ସେ ଘରଛାଡ଼ି ଆସିଥିଲେ । ଯେଉଁଦିନ ସେ ଘରଛାଡ଼ିଲେ, ସେ ଦିନ ତାଙ୍କ ପରିବାରର କହୁଲୋକ ଏ କଥା ଜାଣିନଥିଲେ । ସେ ଯେ ସଂସାର ଛାଡ଼ି ପଳାଉଛନ୍ତି ବୋଲି ଘର ଛାଡ଼ିବାର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ତାଙ୍କ ଅତି ଆଦରର ସାନପୁଅ କୁଳଭଦ୍ର ମଧ୍ୟ ଜାଣିପାରି ନ ଥିଲା । ସ୍ତ୍ରୀଙ୍କ ମହତ ପାରିବାରିକ ମନୋମାଳିନ୍ୟ ରହିଥିବାରୁ ତାଙ୍କ ଯିବା ଆସିବା ବିଷୟରେ ସ୍ତ୍ରୀ ଜ୍ୟୋତିର୍ମୟୀ ବହୁଦିନ ଧରି ଅନାସକ୍ତ ରହିଥିଲେ ।

ଘର ଛାଡ଼ିବାର ଦୀର୍ଘ ଛଅମାସ ପରେ ପରିବାରର ସମସ୍ତେ ବିଶ୍ୱାସ କରିନେଲେ ଶୀଳଭଦ୍ର ପଠାଇଥିବା ଶେଷ ଚିଠିର ବିଷୟ ବସ୍ତୁର ସତ୍ୟତା ସମ୍ପର୍କରେ । ଆଜି ପର୍ଯ୍ୟନ୍ତ ଜ୍ୟୋତିର୍ମୟୀ ସ୍ୱାମୀଙ୍କର ସେହି ଶେଷ ସ୍ମାରକୀକୁ ବେଳେ ବେଳେ ପଢ଼ି ପଢ଼ି ତା'ର ଅକ୍ଷର ସବୁକୁ ମନ ମଧ୍ୟରେ ହଜମ କରି ନେବାପାଇଁ ଚେଷ୍ଟା କରନ୍ତି । ଚିଠିର ଅକ୍ଷର ଗୁଡ଼ାକ ଶୀଳଭଦ୍ରଙ୍କ ଆତ୍ମାର ଏକ ଏକ ଅଣୁପରି ସେ ମନେ କରନ୍ତି । ପଢନ୍ତି; ଚିଠି ବୋଲି ମନେ କରି ନୁହେଁ—ଶୀଳଭଦ୍ରଙ୍କର ଆତ୍ମଲିପି ଓ ଆତ୍ମ ପ୍ରକାଶ - ମୂର୍ତ୍ତି ବୋଲି ମନେ କରି ।

ଚିଠିରେ ଲେଖାଥିଲା—

ଜ୍ୟୋତିର୍ମୟୀ,

ମୁଁ ବର୍ତ୍ତମାନ ସବୁ ବୁଝିଗଲି । ଅସ୍ଥାୟୀ ବିଷୟ ବାସନା ଉପରେ ଏତେ ଗୁରୁତ୍ୱ ଆରୋପ କରିବା ମୋ ପକ୍ଷରେ ଗୁରୁତର ଅପରାଧ ହୋଇଛି । ଏବେ ତୁମେମାନେ ସମସ୍ତେ ମୋର ଆତ୍ମିକ ଚେତନାକୁ ଆଉ ଗ୍ରାସ କରିବାକୁ ସମର୍ଥ ହୋଇ ପାରିବ ନାହିଁ । ତୁମ

ପରେ ମୁଁ ତୁମଠାରୁ ସୁନ୍ଦର କମନୀୟ ଆଉ ଏକର ସନ୍ଧାନରେ ଯାଉଛି । ବିଶ୍ୱାସ, ତୁମ ନର୍କ ଯନ୍ତ୍ରଣାରୁ ମୁଁ ନିଶ୍ଚୟ ଏଥର ଅବ୍ୟାହତି ନେଉଛି । ଯେ ହେତୁ ସମ୍ପର୍କରେ ସେପରି ନିବିଡ଼ତା ନ ଥିଲା, ତେଣୁ ତୁମେ ନିଶ୍ଚୟ ମୋ ପାଇଁ ଦୁଃଖିତ ହୋଇନଥିବ ମୁଁ ଜାଣେ । ତୁମ ଓ ମୋ ମଧ୍ୟରେ ବ୍ୟବଧାନର ଦୂରତ୍ୱ ବଢ଼ି ଯାଉଛି—ଆହୁରି ବଢ଼ିବ; ଏବଂ ବଢ଼ି ବଢ଼ି ଗୋଟିଏ ସୀମା ରେଖାଠାରୁ ଅନ୍ୟ ସୀମା ରେଖା ଧୀରେ ଧୀରେ ଅଦୃଶ୍ୟ ହୋଇଯିବ । ସେତେବେଳେ ମେ ସ୍ଥାନ ନିଶ୍ଚୟ ମୋର କଳ୍ପନାର ବାଞ୍ଛିତ ଜଗତରେ ଥିବ । ସେଠାରୁ ମୁଁ ସମସ୍ତଙ୍କୁ ଆନନ୍ଦରେ ଭୁଲି ଯାଇଥିବି ଓ ତୁମର, ମୋର ସମ୍ପର୍କିତ ଯନ୍ତ୍ରଣା କ୍ଷୀଣତର ହୋଇ ଯାଇଥିବ ।

ସେହି ପରି ଅବସ୍ଥା ହିଁ ମୋ ଜୀବନର ପ୍ରକୃତ ସୀମା ।

ସେ ସୀମା ଅତିକ୍ରମୀ ଯିବା ପରେ ମୋ ପାଇଁ ଆଉ ଫେରିବାର କଳ୍ପନା ନ କରିବା ଉଚିତ ।

ତୁମର

ଶୀଳଭଦ୍ର

ଜ୍ୟୋତିର୍ମୟୀ ଏ ଚିଠିର ଅର୍ଥକୁ ଠିକ୍ ଭାବେ ବୁଝିନ୍ତି କି ନାଁ ଜଣାଯାଏନା । ତେବେ ସେ ଏ ଚିଠିକୁ ପଢ଼ନ୍ତି—ଥରେ ନୁହେଁ—ଦୁଇଥର ନୁହେଁ—ବହୁତଥର ।

ଶୀଳଭଦ୍ର ବୈକୁଣ୍ଠ ଯିବେ—ମୁକ୍ତିର ସ୍ୱାଦ ପାଇବେ—ଦିବ୍ୟ ଅମୃତର ସନ୍ଧାନ ନେବେ । ସେ ବୁଲିଛନ୍ତି ଉପଯୁକ୍ତ ସାଧନ ପୀଠର ଅନୁସନ୍ଧାନରେ ।

ସ୍ଥାନ ପରେ ସ୍ଥାନ ଅତିକ୍ରମ କରି ସେ ଆଗେଇ ଯାଉଛନ୍ତି । ସମ୍ମୁଖରେ ନିର୍ଜ୍ଜନ ପାହାଡ଼ର ଶ୍ୟାମଳିମା ମଥା ବିସ୍ତୃତ ଆକାଶ ଆଡ଼କୁ ସ୍ଥିର ହୋଇ ଗମ୍ଭୀର ଭାବେ ଉର୍ଦ୍ଧ୍ୱ ରହିଛି । ନିକଟରେ ବେଗବତୀ ନଦୀ କଳ କଳ ଶବ୍ଦ କରି ଆହ୍ୱାନ କରୁଛି ଜୀବନ ପରେ ଜୀବନକୁ ।

ପାହାଡ଼ର ଚତୁର୍ଦ୍ଦିଗରେ ବିଭିନ୍ନ ବୃକ୍ଷର ସମଷ୍ଟିଗତ ସଂସାର । ପାହାଡ଼ର ଚୂଡ଼ା ଅଭିମୁଖରେ ଆଗେଇ ଯାଉଛନ୍ତି ସେ । ସାଧନ ପାଇଁ ସେହି ସ୍ଥାନ ହିଁ ଉପଯୁକ୍ତ—ବୈକୁଣ୍ଠ ପାଇଁ ସେହି ସ୍ଥାନର ମହାତ୍ମ୍ୟ ରହିଛି । ଉପରକୁ ଉଠିଯାଉଛନ୍ତି ସେ ।

—"ଶୀଳଭଦ୍ର !

—"କିଏ ?" ଚମକି ପଡ଼ିଲେ ଶୀଳଭଦ୍ର । କିଏ ଡାକୁଛି ? ଏ ନିର୍ଜ୍ଜନ ଜଙ୍ଗଲ ଭିତରେ କାହାର ଏ ଆହ୍ୱାନ ।

—"କିଏ ? କିଏ ?" ଶୀଳଭଦ୍ର ପୁନର୍ବାର ଚିତ୍କାର କରି ଉଠିଲେ । ଚାରି ଆଡ଼କୁ ଚାହିଁଲେ ସେ । କୌଣସି ଲୋକ କିମ୍ବା କୌଣସି ଦେବ ଦେବୀ କେହି ତାଙ୍କର ଦୃଷ୍ଟି ଗୋଚର ହେଲେ ନାହିଁ । ତେବେ କଣ ଶୀଳଭଦ୍ରଙ୍କର ଭ୍ରମ ହୋଇଛି । ସେ ଭ୍ରମ କେଉଁଥିପାଇଁ ? ସବୁକୁ ଭୁଲି ଯିବା ପରେ ପୁଣି କିଏ କାହିଁକି ତାଙ୍କୁ ପଛରୁ ଡାକୁଛି ? ନାଃ ! ସମସ୍ତ ଭୁଲିଯିବାକୁ ପଡ଼ିବ । ସାଧନ ପଥରେ ଯେତେ ବାଧା ଅଛି, ଅତି ନିଷ୍ଠୁର ଭାବରେ ସେସବୁକୁ ଦଳି ମକ୍ଟି ଆଗକୁ ଯିବାକୁ ହେବ ।

ପାହାଡ଼ର ଉପରକୁ ଉପରକୁ ଆଗେଇ ଗଲେ ଶୀଳଭଦ୍ର । ପଦପାତରେ ଶୁଖିଲା ପତ୍ର ସବୁ ଶବ୍ଦ କରି ଉଠିଲା । ନିକଟରେ ଠିଆ ହୋଇଥିବା ହରିଣ ପଲ ବିସ୍ମୟରେ ତାଙ୍କ ଆଡ଼କୁ ଚାହିଁ ଦ୍ରୁତ ପଦରେ ଜଙ୍ଗଲ ଭିତରକୁ ଦଉଡ଼ି ପଳାଇଗଲେ । କେଉଁ ଏକ ଘଞ୍ଚ ବୃକ୍ଷର ପତ୍ର ଗହଳକୁ ଭେଦ କରି କୋଇଲିର କୁହୁ କୁହୁ ସ୍ୱର ଭାସି ଆସିଲା । କି କରୁଣ ସ୍ୱର ! ଜୀବନର ସଂଗ୍ରାମରେ ସିଏ କଣ ଥକି ପଡ଼ିଛି ? ସେ କଣ ଏ ସଂସାର ପ୍ରତି ବୀତସ୍ପୃହ ? ଶୀଳଭଦ୍ରଙ୍କର ଆଖି ଦୁଇଟି କାହିଁକି କେଜାଣି ଲୁହସିକ୍ତ ହୋଇ ଉଠିଲା । ଏଁ ! ଏ କଣ ଦୁର୍ବଳତା ? ନିଜେ ନିଜକୁ ପ୍ରଶ୍ନ କଲେ ଶୀଳଭଦ୍ର । ଏ ଦୁର୍ବଳତା କଣ ପାଇଁ ? ସାଧନ ପଥରେ ଏପରି ଅମୂର୍ତ୍ତ ବସ୍ତୁଭିତ୍ତି ଭାବକୁ କଦାପି ବରଦାସ୍ତ କରାଯାଇ ପାରେ ନାହିଁ । ଅତି ଦୃଢ଼ ଭାବେ ସବୁ ବିଭ୍ରାଟର ସମ୍ମୁଖୀନ ହେବା ପାଇଁ ସେ ମନରେ ସାହସ ସଞ୍ଚୟ କରୁଥିଲେ ।

ବୈକୁଣ୍ଠର ସନ୍ଧାନ କରିନେଇ, ଏ ସୃଷ୍ଟିର ବଂଶଧରମାନଙ୍କ ପାଇଁ ଜଟିଳ ସମସ୍ୟାର ସମାଧାନ କରି, ନୂତନ ସ୍ୱର୍ଗର ସନ୍ଧାନ ଦେଇଯିବେ । ପୁନର୍ବାର ଆଗେଇବା ସମୟରେ ପାଦରେ ଏକ ଅପୂର୍ବ ପ୍ରକାର ଜ୍ୱାଳା ଅନୁଭବ କଲେ ସେ । ଏ ଜ୍ୱାଳା କାହିଁକି ? ପୁନର୍ବାର ନିଜକୁ ପ୍ରଶ୍ନ କରିବା ପାଇଁ ବାଧ୍ୟ ହେଲେ ସେ । ତେବେ ଏ ସ୍ଥାନ କଣ ସାଧନ ପାଇଁ ଉପଯୁକ୍ତ ନୁହେ ? ଏହା କଣ ଏକ ଶୁଦ୍ଧ ପୀଠ ଭାବରେ କେହି ମୋ ପୂର୍ବରୁ ଗ୍ରହଣ କରି ନାହାନ୍ତି ? ସାଧକକୁ ବିଭ୍ରାନ୍ତ କରିବା ପାଇଁ ଏ ପାହାଡ଼ ସ୍ତୂପରେ କଣ ମାୟାର ଉପାଦାନ ରହିଛି ??

ଶୀଳଭଦ୍ର ବୁଝିଗଲେ କଣ ଏ ସ୍ଥାନର ନିଶ୍ଚୟ ଦୋଷ ରହିଛି ବୋଲି । ସୂର୍ଯ୍ୟ ପଶ୍ଚିମର ସୀମାନ୍ତରେ ସମ୍ପୂର୍ଣ୍ଣ ବିଲୀନ ନହେବା ପୂର୍ବରୁ ସେ ପଛକୁ ପାଦ ଫେରାଇଲେ । ଅନ୍ୟ ସ୍ଥାନର ସନ୍ଧାନ ନେବା ପାଇଁ, ସେ ଫେରି ଆସୁଥିଲେ ପାହାଡର ପାଦ ଦେଶରୁ ।

× × ×

ସମ୍ମୁଖରେ ସମୁଦ୍ରର ଖ୍ୟମକାନ୍ତ ରୂପ । ଲହଡ଼ି ପରେ ଲହଡ଼ି କୂଳରେ ମଥା ପିଟି ପିଟି ଗର୍ଜି ଉଠୁଛି । ସମୁଦ୍ର କୂଳର ବିସ୍ତୀର୍ଣ୍ଣ ବାଲୁକା ପ୍ରାନ୍ତରରେ ବିଫଳ ଯୋଗୀ ପରି ବହୁଗୁଡ଼ାଏ ଝାଉଁଗଛ ଦୂରକୁ ଦୃଷ୍ଟି ନିକ୍ଷେପ କରି ଠିଆହୋଇ ରହିଛି । ଦୀର୍ଘଶ୍ୱାସ ଛାଡ଼ିଲା ପରି ବେଳେବେଳେ ଝାଉଁବଣର ପତ୍ର ସମୂହ ସୁ··· ସୁ··· ଶବ୍ଦ କରି ସମୁଦ୍ରର ଗର୍ଜନ ସହିତ ପ୍ରତିଯୋଗିତା ଆରମ୍ଭ କରି ଦେଉଥାଏ । ଶୀଳଭଦ୍ର ଅପଲକ ନେତ୍ରରେ ସ୍ଥାନଟିକୁ ଦେଖିନେଲେ । ବାଃ ! ଚମତ୍କାର ସ୍ଥାନ ! ସାଧନ ପାଇଁ ଉପଯୁକ୍ତ କ୍ଷେତ୍ର । ସମୁଦ୍ରର ଶୀତଳ ପବନ ବାଜି ତାଙ୍କର ସାରା ଶରୀର ପୁଲକିତ ହୋଇ ଉଠୁଥିଲା । ଝାଉଁ ବନର ମର୍ମର ଗୀତ ତାଙ୍କର ଶୁଷ୍କ ପ୍ରାଣ ତଳେ ହଠାତ୍ ଏକ ଫଲ୍‌ଗୁ ରେଖା ଆଣିଦେଲା । ଓଃ ! ଇଏ କି ଅନୁଭୂତି !! ଶୀଳଭଦ୍ର ଅସ୍ଥିର ଭାବରେ ସମୁଦ୍ରର ବିରାଟ ମାଳ ଭିତ୍ତ ଉପରେ ଦୃଷ୍ଟି

ନିବଦ୍ଧ କଲେ । ସମୁଦ୍ର ଗୁଡିରେ ତରଙ୍ଗ ଉପରେ ତରଙ୍ଗର ଆକ୍ରମଣ । ନିଜର ଦେହ ସତ୍ତ୍ୱ ସହିତ ନିଜେ ଦ୍ୱନ୍ଦ୍ୱ ଆରମ୍ଭ କରି ଦେଉଛି ତରଙ୍ଗ । ଅକାରଣରେ ଏପରି ସଂଗ୍ରାମରତ ହେବାର ଅର୍ଥ କ'ଣ ହୋଇପାରେ ବୋଲି ନିଜକୁ ପ୍ରଶ୍ନ କଲେ ଶୀଲଭଦ୍ର ।

ଅନାକାଙ୍କ୍ଷିତ ଅତୀତର ପୁନରାବୃତ୍ତି ସେ କରିବା ପାଇଁ ଆଗ୍ରହୀ ନଥିଲେ ମଧ୍ୟ ଆପେ ଆପେ ତାଙ୍କର ଗୁଡ ଖିଷଣ ଘର ହୋଇ ଆସିଲା । ଅତୀତର ଏକ ଦୃଶ୍ୟ ସହିତ ସମୁଦ୍ରର ଢେଉ ଲଢ଼େଇକୁ ସେ ତୁଳନା କରିବାକୁ ଆରମ୍ଭ କରିଦେଲେ । ଘଟଣାଟି ଠିକ ନିଖି ଚିତ୍ର ତାଙ୍କର ମାନସ ପଟରେ ଉଜ୍ଜୀବିତ ହୋଇ ଉଠିଲା । ତାଙ୍କର ମନେ ପଡ଼ିଗଲା—ଅତୀତରେ ଏକଦା ତାଙ୍କର ବଡ଼ ପୁଅ ତାଙ୍କ ସମ୍ମୁଖରେ ଏକ ପ୍ରଚଣ୍ଡ ମୂର୍ତ୍ତି ଧରି ତାଙ୍କୁ କ୍ରୋଧରେ କହୁଥିଲା—

"ଅଯୋଗ୍ୟ ପିତୃତ୍ୱ ପାଇଁ ତୁମେ ବରଂ ଦୁଃଖ କରିବା ଉଚିତ୍ । ପରିବାରର ସୁଖ ସମୃଦ୍ଧି ପାଇଁ ଯିଏ ସଚେତନ ନୁହେଁ ସେପରି ଲୋକ ପିତୃତ୍ୱର ଅଧିକାର କେଉଁ ସାହସରେ ଆମ ଉପରେ ଲଦି ଦେବାକୁ ଚେଷ୍ଟାକରେ; ଭାବିଲେ ଘୃଣା କରିବାକୁ ଇଚ୍ଛାହୁଏ । ଛି...ଛି......।"

ଆଉ ଭାବି ପାରିଲେ ନାହିଁ ଶୀଲଭଦ୍ର । ଝାଉଁଗଛ ଗୁଡ଼ାକ ତାଙ୍କ ଆଖି ଆଗରୁ ଯେତେ ଯେପରିକି ଖୁବ୍ ଦୂରକୁ ପଳାଇ ଯିବାକୁ ଆରମ୍ଭ କରୁଥିଲା । ସମୁଦ୍ର ପବନର ଶୀତଳତା ତାଙ୍କୁ ଅତି ଯନ୍ତ୍ରଣା ଦାୟକ ମନେ ହେଲା ।

—"ଶୀଳଭଦ୍ର ! ତୁମେ କାପୁରୁଷ !! ତୁମେ ପଳାତକ !!!"

ସମୁଦ୍ର ଗର୍ଜ୍ଜନ ଭିତରୁ ଏକ ବଜ୍ରପରି ସ୍ୱର ତାଙ୍କର ଧୈର୍ଯ୍ୟକୁ ଆଘାତ ଦେଇ ଆହତ କରିଦେଲା ।

ଶୀଲଭଦ୍ର ଭାବିନେଲେ —

ନାଃ ! ଏ ସ୍ଥାନ ଉପଯୁକ୍ତ ନୁହେଁ । ସାଧନାର ସିଦ୍ଧି ପାଇଁ ଏ ସ୍ଥାନର କୌଣସି ମହାତ୍ମ୍ୟ ନାହିଁ ।

ଝାଉଁବଣର ନିଷ୍ଠୁର ବିଦ୍ରୂପକୁ ସହିବାର ଉପାୟ ନଥିଲା ତାଙ୍କର । ପଛକୁ ଫେରି ଆସିଲେ ସେ । ଏଥର ଭିନ୍ନ ଅଭିମୁଖୀ ହୋଇ ଅନ୍ୟ ସ୍ଥାନର ସନ୍ଧାନରେ ଆଗେଇଲେ ଶୀଳଭଦ୍ର ।

× × ×

ଜନଶୂନ୍ୟ ପ୍ରାଙ୍ଗଣ ମଧ୍ୟରେ ଏକ ଜୀର୍ଣ୍ଣ ପୁରାତନ ପରିତ୍ୟକ୍ତ ଭଗ୍ନ ମନ୍ଦିର ନିକଟରେ ପହଞ୍ଚିଲେ ସେ । ମନ୍ଦିରର ଅନତି ଦୂରରେ ଏକ ବୃହତ୍ ପୁଷ୍କରିଣୀ । ପୁଷ୍କରିଣୀର ଜଳ ଉପରେ ନାନା ଜାତିର ଜଳଜ ଗୁଳ୍ମ ଓ ଭାସମାନ ଦଳଘାସ । ପୁଷ୍କରିଣୀର ସମସ୍ତ ପ୍ରସ୍ତର ପାହାଚ କାଳର ଅକଥନୀୟ ଆଘାତରେ ନିଃଶେଷ ହୋଇ ଆସିବା ଉପରେ । ମନ୍ଦିରର ଭଗ୍ନ ମୁଖଶାଳାର ଧ୍ୱଂସାବଶେଷ ଆଡ଼କୁ ଲକ୍ଷ୍ୟ କଲେ ଶୀଳଭଦ୍ର । ରାଶି ରାଶି ପ୍ରସ୍ତର ସମୂହ ଇତଃସ୍ତତଃ ହୋଇ ପଡ଼ିରହିଛି । ମନ୍ଦିର ଗାତ୍ରରେ ଗୋଟିଏ ଦୁଇଟି ବଟ ବୃକ୍ଷ ନିଜର ଆଧିପତ୍ୟ ଜାହିର କରିବା ପାଇଁ ଚେଷ୍ଟା ଚଳାଇ କେତେକାଂଶରେ ସଫଳ ହୋଇଛି । ନିକଟରେ କୌଣସି ଜନବସତି ଥିବାର ଲକ୍ଷ୍ୟକରି ପାରିଲେ ନାହିଁ ସେ । ସାଧନ ପାଇଁ ଏ ସ୍ଥାନଟି ଉପଯୁକ୍ତ ବୋଲି ତାଙ୍କର ହୃଦ୍‌ବୋଧ ହେଲା । ମନ୍ଦିର ସମ୍ମୁଖରେ ଥିବା ଏକ ପ୍ରସ୍ତର ଚଟାଣ ଉପରେ ନିଜର କମ୍ବଳ ବିଛାଇ ବସିପଡ଼ି ଶାନ୍ତିରେ ନିଶ୍ୱାସ ମାରିଲେ ସେ । ଖୁବ୍ ଆନନ୍ଦ ଲାଗିଲା ତାଙ୍କୁ । ଏହି ସ୍ଥାନର ପବିତ୍ରତା ସମ୍ପର୍କରେ ସେ ନିଃସନ୍ଦେହ ହୋଇଉଠିଲେ । ଶୀତଳ ପବନ ସ୍ପର୍ଶରେ କ୍ଳାନ୍ତ ଚକ୍ଷୁ ଦୁଇଟି ତାଙ୍କର ବୁଜି ହୋଇ ଆସିଲା ।

ବହୁ ସ୍ଥାନ ଭ୍ରମଣ କରି ସେ ଅତୀବ କ୍ଳାନ୍ତ ହୋଇ ପଡ଼ିଥିଲେ । ତେଣୁ ଚକ୍ଷୁ ମୁଦ୍ରିତ କରିବାର ଅଳ୍ପ ସମୟ ପରେ ଗାଢ଼ ନିଦ୍ରାରେ ଅଭିଭୂତ ହୋଇ ପଡ଼ିଲେ ଶୀଳଭଦ୍ର । ନିଦ୍ରିତ ଅବସ୍ଥାରେ ଅସଂଲଗ୍ନ ଭାବେ ବହୁ ସ୍ୱପ୍ନ ଦେଖିଥିଲେ ସେ । ଚଳଚିତ୍ର ପରଦାର ଦୃଶ୍ୟ, ପରି ଗୋଟିଏ ପରେ ଗୋଟିଏ ଚିତ୍ର ସେ ସ୍ୱପ୍ନରେ ଦେଖିପାଉଥିଲେ । ଶେଷ ସ୍ୱପ୍ନଟିରେ ସେ ଚିତ୍କାର କରି କହି ଉଠିଲେ—"କିଏ ମାଆ ! ତୁମେ ସ୍ୱାମୀ ପରିତ୍ୟକ୍ତା ? ତେବେ ମୋ ନିକଟକୁ କାହିଁକି ଆସିଛ ? ନାଃ !..."

ନାଃ···ତୁମେ ଫେରିଯାଅ । ମୁଁ ତୁମକୁ ଏ ଯନ୍ତ୍ରଣାର ପୃଥିବୀରୁ ମୁକ୍ତି ଦେଇ ପାରିବ ନାହିଁ । ବର୍ତ୍ତମାନ ସୁଦ୍ଧା ମୋର ସାଧନ ଆରମ୍ଭ ହୋଇନାହିଁ । ମୋର ସାଧନ ପରେ ମୁଁ ଯେତେବେଳେ ସେ ରାଜ୍ୟର ସନ୍ଧାନ ପାଇବ ସେତେବେଳେ ନିଶ୍ଚୟ ତାହା ତୁମମାନଙ୍କୁ ଜଣାଇ ଦେବ । ତୁମେ ଫେରିଯାଅ ମାଆ ! ମୋର ସାଧନା ପଥରେ ଅନ୍ତରାୟ ହୋଇ ତୁମେ ଏବେ ମୋ ସମ୍ମୁଖରେ ପ୍ରତିବନ୍ଧକ ସୃଷ୍ଟି କରନା । ତୁମେ ଫେରିଯାଅ—ଫେରିଯାଅ—ଫେରିଯାଅ ମାଆ !

ସ୍ୱପ୍ନରେ ଶୀଳଭଦ୍ର ଉଦ୍‌ବିଗ୍ନ ହୋଇ ଉଠିଲେ । ହଠାତ୍ ତାଙ୍କର ନିଦ୍ରାଭଙ୍ଗ ହେଲା । ସମ୍ମୁଖକୁ ଚାହିଁଲେ ଶୀଳଭଦ୍ର । ଦେଖିଲେ—

ତାଙ୍କ ସମ୍ମୁଖରେ ଜଣେ ପ୍ରୌଢ଼ା ଯୋଡ଼ହସ୍ତରେ ଗଳାରେ ପଣତକାନି ପକାଇ ଆଶ୍ରୁମାଣ୍ଡ ଅଶ୍ରୁଳ ନୟନରେ କହୁଥିଲେ—"ବାବା ! ପୂର୍ବ ଜନ୍ମର ତପସ୍ୟା ଫଳରେ ମୁଁ ଆଜ ଆପଣଙ୍କର ଦର୍ଶନ ପାଇଛି । ଏ ଯନ୍ତ୍ରଣାର ସଂସାରରୁ ମୋତେ ମୁକ୍ତକର ବାବା !

ବିସ୍ମୟରେ ଶୀଳଭଦ୍ର ପ୍ରୌଢ଼ାର କାତର ମୁଖମଣ୍ଡଳକୁ ଚାହିଁ ରହିଲେ । ପ୍ରୌଢ଼ା ପୁନର୍ବାର କହିଲେ—

—"କେବଳ ଆପଣଙ୍କର ଆଶୀର୍ବାଦ, ଦୟା ଓ କରୁଣା ପାଇବା ପାଇଁ ବହୁଦିନ ଧରି ଚେଷ୍ଟା କରି ଆସିଛି ବାବା ! ଆଜ ଭଗବାନଙ୍କ ଅପାର କରୁଣା ବଳରେ ଦର୍ଶନ ପାଇଛି । ଏ ଦୁଃଖିନୀକୁ ମୁକ୍ତି ଦିଅ—ଚରଣରେ ଆଶ୍ରୟ ଦିଅ ବାବା !"

ଚମକି ପଡ଼ିଲେ ଶୀଳଭଦ୍ର । ପ୍ରୌଢ଼ା ବାରମ୍ବାର କହୁଛନ୍ତି—'ଚରଣରେ ଆଶ୍ରୟ ଦିଅ ।' ତେବେ ଏ କଣ ତାଙ୍କ ପରିତ୍ୟକ୍ତା ପତ୍ନୀ ଜ୍ୟୋତିର୍ମୟୀ ? ଏ କଣ ବିରହ କାତରା ସତୀ ଶିରୋମଣି ସୀତା ? ଏ କଣ ଅଭିଶପ୍ତ ଦେହ ପାଷାଣୀ ଅହଲ୍ୟା ମୁକ୍ତି ପାଇଁ ରାମଙ୍କ ପଦ ରେଣୁ ସ୍ପର୍ଶ ନିମନ୍ତେ ଅଶ୍ରୁଳ ମିନତି କରୁଛି ? ଏ କଏ ?

ଶୀଳଭଦ୍ର ଗମ୍ଭୀର ଭାବେ ଧୀର କଣ୍ଠରେ ପଚାରିଲେ—"ତୁମେ କିଏ ମାଆ ?"

—"ମୁଁ ହତଭାଗିନୀ ବ୍ରାହ୍ମଣୀ ! ସ୍ୱାମୀ ପରିତ୍ୟକ୍ତା, ଅଭିମାନିନୀ ମୁଁ । ଭଗବାନଙ୍କ ଅନ୍ୱେଷଣ କରୁଥିବା ଫଳରେ ଆଜି ଆପଣଙ୍କ ପରି ସିଦ୍ଧ ପୁରୁଷଙ୍କର ଦର୍ଶନ ପାଇଛି । ଚରଣତଳେ ଆଶ୍ରୟ ଦିଅ ବାବା ।"

ଶୀଳଭଦ୍ର ବୁଝାଇବା ପାଇଁ ଚେଷ୍ଟା କରି କହିଲେ—"ମୁଁ ସିଦ୍ଧ ପୁରୁଷ ନୁହେଁ ମାଆ । ମୁଁ ବି ଜ୍ଞାନ ସନ୍ଧାନରେ ବାହାରିଛି । ମୋତେ ସିଦ୍ଧ ପୁରୁଷ କହି ଲଜ୍ଜା ଦିଅ ନାହିଁ ମାଆ !"

ଅବୁଝା ନାରୀ କହି କହି ହୋଇ କାନ୍ଦି ଉଠି କହିଲେ—"ମୋତେ ଠକୁଛ କାହିଁକି ବାବା ? ଏ ଦୁଃଖିନୀକୁ ଭୁଲାଇ କଣ ଲାଭ ପାଇବେ ? ସବୁ ଜ୍ଞାନ ତ ଆପଣଙ୍କ ପକ୍ଷେ ସମାନ । ଆପଣ ପୁଣି କେଉଁ ଜ୍ଞାନର ସନ୍ଧାନରେ ବାହାରିଛନ୍ତି ? ଏ ଯନ୍ତ୍ରଣା-ଜର୍ଜରିତ ଜୀବନକୁ ମୁକ୍ତି ଦିଅ ବାବା—ପଦତଳେ ସ୍ଥାନ ଦିଅ । କଣିକାଏ ଚରଣ ରେଣୁ ଦେଇ ଆଶୀର୍ବାଦ କର ବାବା !"

ଶୀଳଭଦ୍ରଙ୍କର ଆଖି ଅଶ୍ରୁ ଛଳ ଛଳ ହୋଇ ଆସିଲା । ସେ ଦୁଇହାତ ଊର୍ଦ୍ଧ୍ୱକୁ ଟେକି କହିଲେ—"ଏ ଯନ୍ତ୍ରଣାରୁ କେବେ ନିସ୍ତାର ମିଳିବ ପରମାତ୍ମା ? ଏ ପରୀକ୍ଷାରୁ କେବେ ଉତ୍ତୀର୍ଣ୍ଣ କରିବ ପ୍ରଭୁ ?"

—"ଆପଣଙ୍କ ଦୟା ହେଲେ ଏ ଯନ୍ତ୍ରଣାରୁ ମୁକ୍ତି ମିଳିଯିବ ବାବା ! କେବଳ ଆପଣଙ୍କର ଦୟା—କେବଳ ଶ୍ରୀଚରଣ ତଳର କଣିକାଏ ଧୂଳିକଣା ............ ।"

ପ୍ରୌଢ଼ାର ଆଖିରେ ଲୁହର ଶ୍ରାବଣୀ ।

ଶୀଳଭଦ୍ରଙ୍କର ସାରା ଅଙ୍ଗରେ ଏକ ଅନାହୂତ ସ୍ପନ୍ଦନର ସ୍ୱର, ତରଙ୍ଗ ସୃଷ୍ଟି କରୁଥିଲା । ଏ କ'ଣ ମାୟା ? ଏ କ'ଣ ଯୋଗ ପଥରେ ଏକ ଅନ୍ତରାୟ ? ନିଜେ ନିଜକୁ ବାରମ୍ବାର ପ୍ରଶ୍ନ କରୁଥିଲେ ସେ । ଶୀଘ୍ର ଏ ସ୍ଥାନ ପରିତ୍ୟାଗ କରିବାକୁ ପଡ଼ିବ ତାଙ୍କୁ । ଏ ନାରୀକୁ ବିଦାୟ ଦେଇ

ଏଠାରୁ ବହୁ ଦୂରକୁ ଶୁଦ୍ଧପୀଠ ସନ୍ଧାନରେ ପଳାଇ ଯିବାକୁ ହେବ । ତା ନହେଲେ ବୈକୁଣ୍ଠ ପାଇଁ ସେ ମାର୍ଗର ସନ୍ଧାନ ପାଇପାରିବେ ନାହିଁ । ଚଞ୍ଚଳ ହୋଇ ଉଠିଲେ ଶୀଳଭଦ୍ର । ନିଜର କମ୍ବଳକୁ ଗୁଡ଼ାଇ ରଜ୍ଜୁରେ ବାନ୍ଧି କାନ୍ଧରେ ତାକୁ ଝୁଲାଇ ଠିଆ ହେଲେ ।

—"ମୁଁ କ'ଣ ନିବାଣ ହୋଇ ଫେରିଯିବି ?"

ସମ୍ମୁଖରେ ସେହି ପ୍ରୌଢ଼ାର ଅଶ୍ରୁଳ ନିବେଦନ । ଉପାୟହୀନ ଶୀଳଭଦ୍ର ବଡ଼ ଅନୁନୟ ଭଙ୍ଗୀରେ କହିଲେ—"ପରେ ଦେଖା ହେବ ମାଆ ! ତୁମ କଥା ମୋର ସବୁଦିନ ପାଇଁ ହୃଦୟ ଭିତରେ ରହିବ । ବର୍ତ୍ତମାନ ପାଇଁ ମୋ ଗନ୍ତ ପଥରୁ ତୁମେ ଅପସରି ଯାଅ । ତୁମର ଇଚ୍ଛା ଈଶ୍ବର ପୂରଣ କରିବେ ମା !"

ଶୀଳଭଦ୍ରଙ୍କର ଶେଷ କଥା ପଦକରେ ଏକ ନବୀନ ଆଶାର ସନ୍ଧାନ ପାଇଲା ପରି ପ୍ରୌଢ଼ା ଶୀଳଭଦ୍ରଙ୍କ ସମ୍ମୁଖରେ ଆଣ୍ଠୁମାଡ଼ି ପ୍ରଣାମ କରି ଠିଆହେଲେ; ଆଗକୁ ଆଗେଇଲେ ଶୀଳଭଦ୍ର । ଯନ୍ତ୍ରଣାର ପୃଥିବୀରୁ ଖୁବ୍ ଦୂରକୁ ଯିବା ପାଇଁ ସେ ଅନ୍ୟ ସ୍ଥାନର ସନ୍ଧାନରେ ଚାଲିଲେ ।

× × ×

ପଦ୍ମାସନରେ ବସି ଚକ୍ଷୁ ଦୁଇଟିକୁ ମୁଦ୍ରିତ କରି ବୈକୁଣ୍ଠର ସନ୍ଧାନ କରୁଥିଲେ ଶୀଳଭଦ୍ର । ସମ୍ମୁଖରେ ଏକ କୋଳାହଳ ଶୁଣି ଚକ୍ଷୁ ଖୋଲି ଚାହିଁଲେ ସେ । ଦେଖିଲେ—ଦୂରରେ ଗୁଡ଼ାଏ ଲୋକ ଠିଆ ହୋଇ ହୋ-ହଲ୍ଲା କରୁଥିଲେ ଏବଂ ଜଣେ ନାରୀ ଓ ଜଣେ ପୁରୁଷ ଗୋଟିଏ ଶ୍ରେଷ୍ଠ ଶିଶୁକୁ ଶୀଳଭଦ୍ରଙ୍କର ପାଦଦେଶରେ ଶୁଆଇ ଦେଇ କାନ୍ଦି କାନ୍ଦି କହୁଥିଲେ—"ଏ ପିଲାକୁ ବଞ୍ଚାଇ ଦିଅ ବାବା ! ଆପଣଙ୍କ ପରି ସିଦ୍ଧ ପୁରୁଷ ଥାଉଁ ଥାଉଁ ଏ ପିଲା କଣ ମରିଯିବ ? ଆଶୀର୍ବାଦ କର ବାବା ! ଆପଣଙ୍କର ଦୟା ହେଲେ ଏ ପିଲା ବଞ୍ଚିଯିବ—ସବୁକିଛି ଆପଣଙ୍କ ଦୟାବଳରେ ହୋଇ ପାରିବ ବାବା !"

ଓଃ ! କି ଯନ୍ତ୍ରଣା !!···ଶୀଳଭଦ୍ରଙ୍କର ଦେହରେ ଏକ ନୂତନ ପ୍ରକାର ଯନ୍ତ୍ରଣାର ବିଷ ସଂକ୍ରମିତ ହେବା ପରି ସେ ଅନୁଭବ କଲେ । ସେ ଅତି ଉର୍ଦ୍ଧ୍ବକୁ ହାତଟେକି କହିଲେ—"ଏ କି ମାୟା ପ୍ରଭୁ ! ଉଦ୍ଧାର କର—ଏଥିରୁ ଉଦ୍ଧାର କର !"

ଅଦୂରରେ ସମବେତ ହୋଇଥିବା ବହୁ ଦର୍ଶକ ଶୀଳଭଦ୍ରଙ୍କ ମୁହଁରୁ ଏକଥା ଶୁଣିବା କ୍ଷଣି ଆନନ୍ଦିତ ହୋଇ କହି ଉଠିଲେ—"ଜୟ—ସନ୍ଥ ମହାପୁରୁଷଙ୍କର ଜୟ ।" ସମ୍ମିଳିତ ଜୟ ଧ୍ୱନିରେ ସେଠା ବାୟୁମଣ୍ଡଳ ଭାରାକ୍ରାନ୍ତ ହୋଇ ଉଠିଲା ।

ପିଲା ବଞ୍ଚିଲା କି ନାହିଁ, ତାହାର ଠିକଣାଟି ବିବରଣୀ ଜାଣିବା ପୂର୍ବରୁ ଅନ୍ୟ ସ୍ଥାନର ସନ୍ଧାନରେ ଶୀଳଭଦ୍ର ସେ ସ୍ଥାନ ପରିତ୍ୟାଗ କରିଥିଲେ ।

× × ×

ସ୍ଥାନ ପରେ ସ୍ଥାନ, ବହୁ ସ୍ଥାନ ଭ୍ରମଣ କରିବା ପରେ ସେ ଅନୁଭବ କରିଥିଲେ—ପ୍ରକୃତରେ ଶୁଦ୍ଧପୀଠ ମିଳିବା ସହଜ କଥା ନୁହେଁ । ତେଣୁ ସେ ବିଶ୍ରାମହୀନ ଭାବେ ସହର ପରେ ସହର, ଜଙ୍ଗଲ ପରେ ଜଙ୍ଗଲ ଅତିକ୍ରମ କରି ଆଗେଇବାକୁ ଲାଗିଲେ ।

ଜଣେ ସିଦ୍ଧ ସାଧକଙ୍କର ଦେଶ ଭ୍ରମଣ ସମ୍ବାଦ ଏଥି ମଧ୍ୟରେ ଚତୁର୍ଦ୍ଦିଗରେ ପ୍ରଚାରିତ ହୋଇଯାଇଥିଲା । ସାଧୁଙ୍କର କେବଳ ଆଶୀର୍ବାଦ ଫଳରେ ଅସାଧ୍ୟ ସାଧନ ହୋଇ ପାରୁଛି ବୋଲି ସାରା ଦେଶରେ ଚହଳ ପଡ଼ିଯାଇଥିଲା । ତେଣୁ ଯେଉଁ ବାଟଦେଇ ଶୀଳଭଦ୍ର ଯାଉଥିଲେ, ସେହି ସବୁ ସ୍ଥାନମାନଙ୍କରେ ହଜାର ହଜାର ନରନାରୀ ସମବେତ ହୋଇ ତାଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜଣାଉଥିଲେ । ରାଶି ରାଶି ଫୁଲମାଳ ତାଙ୍କୁ ଭେଟିଦେବା ପାଇଁ ନେଇ ଆସୁଥିଲେ ।

"ଆମେ ମୁକ୍ତ ହୁଁ—ଆମେ ଶାନ୍ତ ହୁଁ—ଆମେ ଯନ୍ତ୍ରଣାରୁ ନିସ୍ତାର ହୁଁ ।"—ସମସ୍ତଙ୍କର ଅନ୍ତର ମଧ୍ୟରେ ଏହି ସ୍ୱର ଗୁଞ୍ଜରିତ ହେଉଥିବା ପରି ଶୀଳଭଦ୍ର ଅନୁଭବ କରୁଥିଲେ ; କିନ୍ତୁ ମୁକ୍ତି ଲାଗି ଯେଉଁ ସାଧନର ଆବଶ୍ୟକତା ରହିଛି ସେଥିପାଇଁ ଶୁଦ୍ଧ ପୀଠ କାହିଁ ? ସମସ୍ତ ସମ୍ବର୍ଦ୍ଧନାକୁ ଏଡ଼ି ଦେଇ—ବହୁ ଫୁଲହାରର ମୋହକୁ ପରିତ୍ୟାଗ କରି ସେ ଆଗେଇ ଯାଉଥିଲେ କେବଳ ଶୁଦ୍ଧପୀଠ ସନ୍ଧାନରେ ।

× × ×

ଧ୍ୟାନମଗ୍ନ ହେଲେ ଶୀଳଭଦ୍ର । ବହୁଚେଷ୍ଟା ଫଳରେ ସେ ଶୁଦ୍ଧ ପୀଠର ସନ୍ଧାନ ପାଇଛନ୍ତି । ଏଥି ପୂର୍ବରୁ ଏହି ସ୍ଥାନକୁ ସୁଦ୍ଧପୀଠ ଭାବେ ବହୁ ମୁନିଋଷି ସ୍ଥାନ ନେଇଥିଲେ । ଏହି ସ୍ଥାନରେ ତପସ୍ୟା କରି ମୁନିଋଷିମାନେ ସିଦ୍ଧ ସାଧକ ଭାବେ ଖ୍ୟାତି ଅର୍ଜନ କରିଥିଲେ ।

ସ୍ଥାନଟିର ଅନତି ଦୂରରେ ପଶ୍ଚିମଘାଟ ପର୍ବତମାଳାର ଘଞ୍ଚ ଜଙ୍ଗଲ ଆରମ୍ଭ ହୋଇଛି । ବହୁ ଦୃଷ୍ଟି କୋଣରୁ ଏ ସ୍ଥାନର ମହାତ୍ମ୍ୟ ବିଷୟରେ ଶୀଳଭଦ୍ର ନିଃସନ୍ଦେହ ହୋଇଥିଲେ ଓ ନିଜ ସାଧନ ପାଇଁ ଏହି ସ୍ଥାନକୁ ସେ ଉପଯୁକ୍ତ ବୋଲି ଗ୍ରହଣ କରିନେଇଥିଲେ । ଚିତ୍ତର ଏକାଗ୍ରତା ନିମିତ୍ତ ସେ ପ୍ରଥମେ ସାଧନ ଆରମ୍ଭ କଲେ । ମନକୁ ନିଶ୍ଚଳ କରି ସବୁଥିରୁ ନିବୃତ୍ତ ରହିବା ପାଇଁ ଧ୍ୟାନମଗ୍ନ ହୋଇଥିଲେ ଶୀଳଭଦ୍ର ।

—"ବାବା ! ଗୁରୁ ବାବା !!"

ଗୁଡ଼ପଟ୍ଟା ଏକ କରୁଣ ଡାକରେ ସଚେତ ହୋଇ ଶୀଳଭଦ୍ର ଆଖି ଖୋଲି ଦେଖିଲେ ଗୋଟିଏ ଚଉଦ ପନ୍ଦର ବର୍ଷର ବାଳକ ତାଙ୍କ ଆଗରେ ଭୂଇଁରେ କାତର ଅବସ୍ଥାରେ ପଡ଼ି ରହିଛି । ଦେହରେ ତାର ଆଦୌ ବସ୍ତ୍ର ନଥିଲା । ଶୁଷ୍କ ହାଡ଼ ଦଧୀଚିଙ୍କର ମାଂସହୀନ କଙ୍କାଳ ପରି ଦେଖାଯାଉଥିଲା । ଶୀଳଭଦ୍ର ବାଳକ ଆଡ଼କୁ ଚାହିଁ ପଚାରିଲେ—

"କିଏ ତୁମେ ବାଳକ ?"

—"ବାବା ! ମତେ କିଛି ଖାଇବାକୁ ଦିଅ ବାବା ! ତୀର୍ଥ ଦର୍ଶନକୁ ଆସି ମୋ ବାପା ମାଆ ଡାକୁଙ୍କ ହାତରେ ଜୀବନ ହରାଇଛନ୍ତି । ବହୁ କଷ୍ଟରେ ମୁଁ ଏତିକି ଦୂର ଚାଲି ଆସିଛି । ଚାରିଦିନ ହେଲା କିଛି ଖାଇ ନାହିଁ ବାବା ! ମୋତେ ମୁଠାଏ......!!

ଅବଶ ବାଳକ ହାତ ଦୁଇଟିକୁ ଉଠାଇ କିଛି ମାଗିଲା ଭଙ୍ଗୀରେ ଶୀଳଭଦ୍ରଙ୍କୁ ଅତି କରୁଣ ଆଖିରେ ଚାହିଁ ରହିଲା । କିନ୍ତୁ ଶୀଳଭଦ୍ର କଣ ଖାଇବାକୁ ଦେବେ ତାକୁ ? ତାଙ୍କ ନିକଟରେ ଯେଉଁ ଖାଦ୍ୟ ଥିଲା ତାହା ଆଜି ପ୍ରାତଃକାଳରୁ ଶେଷ ହୋଇ ଯାଇଛି । ବର୍ତ୍ତମାନ ଉପାୟ କଣ ?

—"ବାବା ! ନ ଦେଲେ ମରିଯିବ ବାବା !!

ବାଳକର ଆକୁଳ ପ୍ରାର୍ଥନା ତାଙ୍କର ହୃଦୟକୁ ବିଗଳିତ କରୁଥିଲା । ବାଳକର ମୁହଁଟି ଠିକ୍ ନିଜର କନିଷ୍ଠ ପୁତ୍ର କୁଳଭଦ୍ରର ମୁହଁ ପରି ଦେଖା ଯାଉଥିଲା—କିନ୍ତୁ କିଏ ଖାଇବାକୁ ଦେବେ ଯେ ତାକୁ ? ବଡ଼ ଅସହାୟ କଣ୍ଠରେ ଶୀଳଭଦ୍ର କହିଲେ—"ବାଳକ ! ବର୍ତ୍ତମାନ ତ କିଛି ନାହିଁ ମୋ ନିକଟରେ ।"

ସମସ୍ତ ଆଶା ଭରସା ଚୂରମାର ହୋଇଗଲା ପରି ବାଳକ ଚିତ୍କାର କରି ଉଠିଲା—"ମୋତେ ନିରାଶ କରିଦେଲ ବା···ବା···!"

ଏହାପରେ ବାଳକର ସ୍ୱର ସବୁଦିନ ପାଇଁ ବନ୍ଦ ହୋଇଗଲା । ସାରା ଶରୀର ଶୀତଳ ହୋଇଉଠିଲା । ତା' ଶରୀରରେ ହାତ ମାରି ଦେଖିଲେ ସେ; କିନ୍ତୁ ବାଳକ ତାଙ୍କୁ ଉପହାସ କରି ମୃତ୍ୟୁ ସହିତ ସମ୍ପର୍କ ସ୍ଥାପନକରି ସାରିଥିଲା ।

ଶୀଳଭଦ୍ରଙ୍କର ଆଖି ଲୁହ ଛଳ ଛଳ ହୋଇ ଉଠିଲା । ମୁଠାଏ ଖାଦ୍ୟ ପାଇଁ ଗୋଟିଏ ଅମୂଲ୍ୟ ରତ୍ନ ତାଙ୍କ ହାତ ମୁଠାରୁ ଖସିଗଲା । ସେହି ଶୁଦ୍ଧପୀଠର ସମସ୍ତ ଅଣୁ ପରମାଣୁ ତାଙ୍କୁ ଘୃଣା କରୁଥିବା ପରି ସେ ଅନୁଭବ କଲେ । କିଏ ଯେପରି କହୁଥିଲା— "ଶୀଳଭଦ୍ର ! ଏହିପରି ଅଗଣିତ ଭୋକିଲା ବାଳକଙ୍କୁ ବଞ୍ଚାଇବାକୁ ହେଲେ ସେମାନଙ୍କ ପାଇଁ ପ୍ରଚୁର ଖାଦ୍ୟ ଉତ୍ପନ୍ନ କରିବାକୁ ହେବ । ଖାଦ୍ୟ ଉତ୍ପାଦନ ପାଇଁ ତୁମେ ସାଧନ କର । ଲୋକଙ୍କୁ ଉତ୍ପାଦନକ୍ଷମ କରି ଦେଶକୁ ବଞ୍ଚିବାର ପ୍ରେରଣା ଦିଅ !"

ଶୀଳଭଦ୍ର ଊର୍ଦ୍ଧ୍ବକୁ ଦୁଇବାହୁ ଟେକି ପାହାଡ଼ର ପ୍ରତ୍ୟେକ ଅଣୁକୁ ପ୍ରତିଧ୍ୱନିତ କରାଇ ଚିତ୍କାର କରି କହି ଉଠିଲେ—"ପ୍ରଭୋ ! ତୁମେ ଏ ଶୁଦ୍ଧ ପୀଠରେ ମୋତେ ନୂତନ ବାଣୀ ଶୁଣାଇଛ । ମୁଁ ଏ ବାଣୀକୁ ସାଦରେ ମୂର୍ତ୍ତିମନ୍ତ କରିବି ପ୍ରଭୁ ।"

ଶୁଦ୍ଧ ପୀଠର ସ୍ତୁପ ଉପରେ ମୃତ ବାଳକର ଶରୀରରେ ହାତ ରଖି କେତେ ବୁନ୍ଦା ଲୁହ ନିଜ ଆଖିରୁ ଝରାଇ ସେହି ସ୍ଥାନ ପରିତ୍ୟାଗ କରିବା ପାଇଁ ଉଦ୍ୟତ ହେଲେ ସେ । ତାପରେ ଦ୍ରୁତପଦରେ ପାହାଡ଼ ପରେ ପାହାଡ଼ ଅତିକ୍ରମ କରି ଚାଲିବାକୁ ଲାଗିଲେ ଶୀଳଭଦ୍ର ।

× × ×

— ବଞ୍ଚାଅ ! ବଞ୍ଚାଅ !! କିଏ ଅଛ ମୋତେ ସାହାଯ୍ୟ କର !!

ଦୂରରୁ ଆସୁଥିବା ଏକ କରୁଣ କ୍ରନ୍ଦନ ଯେତେ ଶୀଳଭଦ୍ରଙ୍କର କର୍ଣ୍ଣଗୋଚର ହେଲା । ଅସ୍ପଷ୍ଟ ଧାରରେ ପଡ଼ି କେହି ବୋଧେ ଏପରି ସାହାଯ୍ୟ ଭିକ୍ଷା କରୁଥିବାର ହୃଦ୍‌ବୋଧ କଲେ ସେ । ଶବ୍ଦ ଆସୁଥିବା ସ୍ଥାନ ଅଭିମୁଖରେ ଦ୍ରୁତ ପଦରେ ଆଗେଇବାକୁ ଲାଗିଲେ ଶୀଳଭଦ୍ର ।

ସମ୍ମୁଖରେ ଏକ ଶିବ ମନ୍ଦିର । ମନ୍ଦିର ଭିତରୁ ଚିତ୍କାର ଶୁଣା ଯାଉଥିଲା—"ଆଃ ! ମୋତେ ବଞ୍ଚାଅ ।" ଧାଇଁଗଲେ ମନ୍ଦିର ଭିତରକୁ ସେ । ସେଠାରେ ଯାହା ଦେଖିଲେ—ନିଜ ଆଖିକୁ ସେ ନିଜେ ଅବିଶ୍ୱାସ କରିବାକୁ ବାଧ୍ୟ ହେଲେ ।

ତାଙ୍କ ସମ୍ମୁଖରେ ଜଣେ ରକ୍ତାକ୍ତ ସ୍ତ୍ରୀଲୋକ ଉଲଗ୍ନ ଅବସ୍ଥାରେ ଠିଆ ହୋଇଛି । ସ୍ତ୍ରୀଲୋକର ଦୁଇପାର୍ଶ୍ୱରେ ଦୁଇଜଣ ବଳିଷ୍ଠ ପୁରୁଷ ତାକୁ ଆକ୍ରମଣ କରିବା ଭଙ୍ଗିରେ ଦଣ୍ଡାୟମାନ । ଏହି ବଳିଷ୍ଠ ପୁରୁଷ ଦୁଇଜଣଙ୍କ ମଥାରେ ତିଳକ, ଗଳାରେ ରୁଦ୍ରାକ୍ଷ ମାଳ ରହିଥିଲା । ସେମାନେ ଗୈରିକ ବସନ ପିନ୍ଧିଥିଲେ ଓ ନାମାବଳି ଉତ୍ତରୀୟ କାନ୍ଧରେ ପକାଇଥିଲେ । ମଝିରେ ଠିଆହୋଇଥିବା ଅସହାୟା ସ୍ତ୍ରୀଲୋକଟି ଏମାନଙ୍କ କବଳରୁ ନିଜକୁ ରକ୍ଷା କରିବା ପାଇଁ ହାତରେ ଏକ କାଷ୍ଠ ଖଣ୍ଡ ଧରିଥିଲା । ତଥାପି ଏ ଦୁଇଜଣଙ୍କ ଆକ୍ରମଣରେ ସ୍ତ୍ରୀଲୋକଟିର ଦେହର ସମସ୍ତ ଆବରଣ ଖୋଲି ଯାଇଥିଲା । ନିଜକୁ ରକ୍ଷା କରିବା ନିମନ୍ତେ ସେ ଘନ ଘନ ଚିତ୍କାର କରୁଥିଲା ।

ଏ ଦୃଶ୍ୟ ଦେଖି ଶୀଳଭଦ୍ରଙ୍କର ସାରା ଅଙ୍ଗ ଥରିଉଠିଲା । ଅସହାୟା ସ୍ତ୍ରୀଲୋକଟିକୁ ରକ୍ଷା କରିବାପାଇଁ ଶୀଳଭଦ୍ର ବଜ୍ର ପାଟିରେ କହିଲେ—"ମା ପ୍ରତି ଏ ଅତ୍ୟାଚାର କରୁଛ କାହିଁକି ?" ଶୀଳଭଦ୍ରଙ୍କର କଣ୍ଠସ୍ୱର ଶୁଣି ଉକ୍ତ ବଳିଷ୍ଠ ଲୋକ ଦୁଇଜଣ ଶୀଳଭଦ୍ରଙ୍କୁ ଆକ୍ରମଣ କରିବା ଲାଗି ଧାଇଁଆସିଲେ । ଏପରି ଏକ ଅପ୍ରତ୍ୟାଶିତ ଆକ୍ରମଣ ପାଇଁ ଶୀଳଭଦ୍ର ପୂର୍ବରୁ ଆଦୌ ପ୍ରସ୍ତୁତ ନଥିଲେ । ତେଣୁ ସେ ପ୍ରାଣ ବିକଳରେ ପଛକୁ ମୁହଁ ବୁଲାଇ ଧାଇଁବାକୁ ଉଦ୍ୟତ ହେଲାବେଳେ, ତାଙ୍କ ସମ୍ମୁଖରେ ଜଣେ ବାଳକ ଏକ ତ୍ରିଶୂଳ ହସ୍ତରେ ଠିଆହୋଇ କହିଲା—"ତୁମକୁ ସାହାଯ୍ୟ କରିବା ନିମନ୍ତେ ଶିବଙ୍କ ନିକଟରୁ ତ୍ରିଶୂଳ

ନେଇ ଆସିଛୁ ବାବା ! ନିଅ—ଏ ତ୍ରିଶୂଳ ଧର । ଏହାର ସାହାଯ୍ୟରେ ମୋ ମାଆଙ୍କୁ ତୁମେ ଏମାନଙ୍କ ହାତରୁ ଉଦ୍ଧାର କର ।" ପରିସ୍ଥିତିକୁ ବିଚାର କରିବାର ଆଉ ଅବକାଶ ନଥିଲା । ତୁରନ୍ତ ସେ, ବାଳକ ହାତରୁ ତ୍ରିଶୂଳ ନେଇ ମହାକାଳ ପରି ଉକ୍ତ ବଳିଷ୍ଠ ଲୋକଦ୍ୱୟଙ୍କ ଆଡ଼କୁ ଧାଇଁଗଲେ । ଶୀଳଭଦ୍ରଙ୍କର ଏପରି ଉଗ୍ର ମୂର୍ତ୍ତି ଦେଖି ଲୋକ ଦୁଇଜଣ ମନ୍ଦିରର ବିପରୀତ ମାର୍ଗ ଦେଇ ବାହାରକୁ ପଳାଇଗଲେ ।

ଲୋକ ଦୁଇଜଣ ଚାଲିଗଲା ପରେ ସେ ମନ୍ଦିର ଭିତରକୁ ଯାଇ ଦେଖିଲେ, ଉଲଗ୍ନ ଅବସ୍ଥାରେ ଏକ ରକ୍ତାକ୍ତ ନାରୀ ମୂର୍ତ୍ତି ମନ୍ଦିର ଚଟାଣରେ ପଡ଼ିରହିଛି । ସ୍ତ୍ରୀଲୋକଟିର ପାଖରେ ବସି ଶୀଳଭଦ୍ର ଅନୁଭବ କଲେ, ପ୍ରଚଣ୍ଡ ଆଘାତ ଫଳରେ ସେ ମୂର୍ଚ୍ଛିତା ହୋଇଯାଇଛି । ତେଣୁ ସେ ତୁରନ୍ତ ଧାଇଁଯାଇ ଶିବଙ୍କ ନିକଟରେ ଥିବା ଜଳଘଟି ନେଇ-ଆସି ସ୍ତ୍ରୀ ଲୋକଟିର ମୁଣ୍ଡରେ ଜଳ ଦେଇ ତାଙ୍କୁ ସଚେତ କରାଇବା ପାଇଁ ଚେଷ୍ଟା କଲେ । ମୂର୍ଚ୍ଛିତା ସ୍ତ୍ରୀଲୋକର ପାଦ ଦୁଇଟିକୁ ଧରି ସେହି ବାଳକଟି 'ମାଆ' 'ମାଆ' ବୋଲି ଚିତ୍କାର କରୁଥିଲା । ଶୀଳଭଦ୍ରଙ୍କର ଆଖି ଲୁହରେ ଭରି ଉଠିଲା । ବାଳକ ଆଡ଼କୁ ଚାହିଁ ଚମକି ପଡ଼ିଲେ ସେ । ତାଙ୍କ ପାଟିରୁ ଆପେ ଆପେ ବାହାରି ପଡ଼ିଲା— "କିଏ ବାବା ? ତୁ କ'ଣ କୁଳଭଦ୍ର ?"

ବାଳକଟି ତାର ନାମ ସନ୍ନ୍ୟାସୀଙ୍କ ମୁହଁରୁ ଶୁଣିବାକୁ ପାଇ ଆଶ୍ଚର୍ଯ୍ୟରେ କହିଲା— "ତୁମେ କିଏ ବାବା ? ମୋର ମାଆଙ୍କୁ ବଞ୍ଚାଇ ଦିଅ । ମୋର ମାଆ ତୀର୍ଥ କରିବାକୁ ଆସିଥିଲେ । ତାଙ୍କ ସହିତ ମୁଁ ମଧ୍ୟ ଆସିଥିଲି । ମୋର ମାଆ ଶୁଣିବାକୁ ପାଇଲେ ଯେ—ଏଠାରୁ ଅଳ୍ପ ଦୂରରେ ଜଣେ ସିଦ୍ଧ ସାଧୁ ତପସ୍ୟା କରୁଛନ୍ତି ବୋଲି । ତାଙ୍କୁ ଦେଖିବା ପାଇଁ ମୋ ମାଆଙ୍କର ପ୍ରବଳ ଆଗ୍ରହ ହେଲା ; କିନ୍ତୁ ବାଟରେ ଆମେ ଏହି ଡାକୁ ମନ୍ଦିରପୂଜକ ଦଳଙ୍କର ହାବୁଡ଼ରେ ପଡ଼ିଗଲୁ ।" ଶୀଳଭଦ୍ରଙ୍କ ମୁହଁରେ ଭାଷା ନଥିଲା । ଝରଣାର ଜଳପରି ଆଖିରୁ ଲୁହ ମୂର୍ଚ୍ଛିତା ନାରୀ ଉପରେ ଝରି ପଡୁଥିଲା । ବାଷ୍ପରୁଦ୍ଧ କଣ୍ଠରେ ସେ କହିଲେ— "ତେବେ ଏଇ କଣ ତୋର ମାଆ ଜ୍ୟୋତିର୍ମୟୀ ?" ବାଳକଟି କାତର କଣ୍ଠରେ କହିଲା— "ହଁ ବାବା ! ଏଇ ମୋର ମାଆ ଜ୍ୟୋତିର୍ମୟୀ ।"

ଶୀଳଭଦ୍ର ବାଳକକୁ ନିଜର ପ୍ରସାରିତ ବାହୁରେ ସ୍ତୁପ ଉପରେ ଟେକି ଧରିଲେ । ମୂର୍ଚ୍ଛିତା ଜ୍ୟୋତିର୍ମୟୀର ଜ୍ୟୋତି ତାଙ୍କୁ ନିର୍ଦ୍ଦେଶ ଦେଇ ସତେ ଯେପରିକି କହୁଥିଲା—"ତୁମେ ଶକ୍ତିମାନ୍ ହୁଅ ! ଏ ଦେଶର ନାରୀଜାତିକୁ ଶକ୍ତିମୟୀ କରି ଗଢ଼ିତୋଳ । ଶିଶୁକୁ ଆଗାମୀ ଜୀବନ ବିଷୟରେ ସଚେତନ କରାଅ ।" ଶୀଳଭଦ୍ର ବାଳକକୁ ସ୍ତୁପ ଉପରେ ଟେକି ରଖି ଶିବମୂର୍ତ୍ତି ଆଡ଼କୁ ଅଶ୍ରୁଳ ନୟନରେ ଚାହିଁ, କହୁଥିଲେ—"ବହୁଦିନ ପରେ ମୁଁ ବୈକୁଣ୍ଠର ସନ୍ଧାନ ପାଇଛି । ମୁଁ ମୋର ଜନ୍ମଭୂମିକୁ ବୁଝି ପାରିଛି । ଦରିଦ୍ର ମଣିଷର ଆତ୍ମା ଭିତରେ ମୁଁ ତୁମର ସନ୍ଧାନ ପାଇଛି । ବିବସନା ନାରୀର ହାହାକାରମୟ ଯନ୍ତ୍ରଣା ଭିତରେ ମୁଁ ଶକ୍ତିର ବିପୁଳ ଆଲୋକ ଦେଖି ପାରିଛି ।"

କୁଳଭଦ୍ର ସାଧୁଙ୍କ କଥାର ଅର୍ଥ କିଛି ବୁଝି ପାରୁନଥିଲା । ସେ କେବଳ ଜାଣିବାକୁ ଚାହୁଁଥିଲା, ତା'ର ମାଆ କେତେବେଳେ ଆଖିଖୋଲି ତା ଆଡ଼କୁ ହସ ହସ ମୁହଁରେ ଚାହିଁବେ ଏବଂ 'ବାପଧନ' କହି କୋଳ ଉପରକୁ ଟାଣି ନେଇ ତା'ର ସାରା ଅଙ୍ଗରେ ଅସଂଖ୍ୟ ଚୁମ୍ବନ ଆଙ୍କିଦେବେ ।

କୁଳଭଦ୍ର ଏକ ଧ୍ୟାନରେ ନିଜ ମାଆର ରକ୍ତହୀନ ମୁଖକୁ ଚାହିଁଥିବା ବେଳେ ଶୀଳଭଦ୍ର ମାଟି-ମାଆ ସ୍ତୁପରେ ବୈକୁଣ୍ଠକୁ ଆବିଷ୍କାର କରିଥିଲେ ଓ ସମ୍ମୁଖରେ ରହିଥିବା ମୂର୍ଚ୍ଛିତା ନାରୀମୂର୍ତ୍ତି ଜ୍ୟୋତିର୍ମୟୀର ଜୀବନ ସଂଗ୍ରାମକୁ ସିଦ୍ଧି ବୋଲି ଗ୍ରହଣ କରିଥିଲେ ଏବଂ ବର୍ତ୍ତମାନ ସମସ୍ତ ପୃଥିବୀର ଧୂଳିମାଟି ଶୁଦ୍ଧପୀଠ ପରି ତାଙ୍କୁ ଜଣା ପଡ଼ୁଥିଲା ।

……କିନ୍ତୁ ଜ୍ୟୋତିର୍ମୟୀର ଆତ୍ମା ରକ୍ତମାଂସର ଶରୀର ଗଣ୍ଡି ମଧ୍ୟରେ ଆବଦ୍ଧ ରହିଥିଲା ନା ଏ ଗଣ୍ଡିକୁ ପରିତ୍ୟାଗ କରି ଆଉ ଏକ ଆଲୋକମୟ ଜଗତରୁ ଶୀଳଭଦ୍ରଙ୍କ ପାଇଁ ଜ୍ୟୋତିର ସନ୍ଧାନ କରୁଥିଲା, ତାହା କୁଳଭଦ୍ର ଏପର୍ଯ୍ୟନ୍ତ ଜାଣିପାରୁ ନ ଥିଲା ।

